# ମହାଭାରତର
# ଷୋଳଟି ଗୀତାର ସାର

(ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପୁରୀର କୁଳପତି
ପ୍ରଫେସର ଡକ୍ଟର ଅଲେଖ ଚନ୍ଦ୍ର ଷଡଙ୍ଗୀଙ୍କର ପ୍ରାକ୍‌କଥନ ସହିତ)

ଲେଖକ :
ବିଷ୍ଣୁ ଚରଣ ମହାନ୍ତି
ବରିଷ୍ଠ ନାଗରିକ

ମହାଭାରତର ଷୋଳଟି ଗୀତାର ସାର

*ସଂକଳକ :*

ଶ୍ରୀ ବିଷ୍ଣୁ ଚରଣ ମହାନ୍ତି

ବରିଷ୍ଠ ନାଗରିକ, ଭୁବନେଶ୍ୱର

*ପ୍ରକାଶକ :*

ଶ୍ରୀ ସୂର୍ଯ୍ୟ ମହାନ୍ତି

୪୫୮, ସହିଦନଗର

ଭୁବନେଶ୍ୱର - ୭୫୧ ୦୦୭

ଫୋନ୍ - ୨୫୧୭୪୪୮

*ପ୍ରାପ୍ତିସ୍ଥାନ :*

ପ୍ରକାଶକଙ୍କ ଠିକଣାରେ

୨, ସୁବର୍ଣ୍ଣରେଖା, ପ୍ରକାଶକ ଓ

ପୁସ୍ତକ ବିକ୍ରେତା, ଲକ୍ଷ୍ମୀସାଗର ଛକ,

କଟକରୋଡ, ଭୁବନେଶ୍ୱର

*ଚିତ୍ର ଶିଳ୍ପୀ :*

ଶ୍ରୀ ଅଶୋକ ଲେଙ୍କା

ସୁପ୍ରିମ ଷ୍ଟୁଡିଓ,ସହିଦନଗର,ଭୁବନେଶ୍ୱର

*ଡ଼ି.ଟି.ପି.*

ଶ୍ରୀ ଅନନ୍ତ କୁମାର ରଥ

*ମୁଦ୍ରଣ :*

ଶ୍ରୀରାମ ସ୍କ୍ରିନ୍‌ପ୍ରିଣ୍ଟର

ସହିଦନଗର, ଭୁବନେଶ୍ୱର୍‌ସ

ଫୋନ୍-୨୫୧୬୯୧୭

*ପ୍ରଥମ ପ୍ରକାଶନ :*

ଅଗଷ୍ଟ, ୨୦୦୩

*ମୂଲ୍ୟ :*

ଷାଠିଏ ଟଙ୍କା ମାତ୍ର

**MAHABHARATARA SOLATIGITARA SARA**

*Author :*

**Sri Bishnu Charan Mohanty**

Senior Citizen, Bhubaneswar

*Publisher :*

**Sri Surya Mohanty**

458, Saheed Nagar,

Bhubaneswar - 751 007, Ph. : 2517448

*Cover Design :*

**Sri Asoka Lenka**

Supreme Studio, Sahid Nagar, BBSR

*DTP :*

**Sri Ananta Kumar Rath**

*Printed at :*

**Sriram Screen Printers**

Saheed Nagar, Bhubaneswar

Phone : 2516917

*First Publication :*

**August, 2003**

*Price :*

**Rupees Sixty only**

# ଉତ୍ସର୍ଗ

ପରମ ପୂଜ୍ୟ ନାମାଚାର୍ଯ୍ୟ ଶ୍ରୀମଦ୍ ବାୟାବାବା ।
ଯାହାଙ୍କ ଶ୍ରୀ ଚରଣତଳେ ବହୁ ଶାସ୍ତ୍ର, ପଠନ,
ଶ୍ରବଣ ଓ ଚିନ୍ତନର ସୌଭାଗ୍ୟ ପାଇଥିଲା
**ଏହି ଦୀନ ଅକିଞ୍ଚନ ।**

ଏ ଜୀବ ସାଧୁସଙ୍ଗ ବିନୁ
ଲଭି ନ ପାରେ ମୋର ତନୁ ।
ସର୍ବ କୁସଙ୍ଗ ଦୋଷ ହରେ
ଯେ ନିତ୍ୟେ ସାଧୁସଙ୍ଗ କରେ ।
ଯେ ଅବା ପତିତ ପାମର
ସତସଙ୍ଗେ ତରେ ଭବଘୋର ।

*ଭା ୧୧/୧୩ ଅ.*

ନିଜ କଥା :

# ମୂର୍ଖ ତୁଣ୍ଡରେ ଗୀତାସାର

ଜଣେ ଚିନ୍ତାଶୀଳ ପଣ୍ଡିତ ଲେଖିଛନ୍ତି ଜ୍ଞାନର ସୀମା ଅଛି ମାତ୍ର ଅଜ୍ଞତା ଅସୀମ । ସଂସ୍କୃତରେ ଉଚ୍ଚତର ଶିକ୍ଷା ଲାଭର ସୁଯୋଗ ଏହି ଅକିଞ୍ଚନକୁ ମିଳିନଥିଲା । ସଂସ୍କୃତ ସାହିତ୍ୟ ବିଶେଷକରି ଧର୍ମଶାସ୍ତ୍ର ଓ ଅଷ୍ଟାଦଶ ପୁରାଣ ପାଠରେ ଆଗ୍ରହହେତୁ ଏ ଦିଗରେ ଉଦ୍ୟମ କଲି । ଶ୍ରଦ୍ଧାସ୍ପଦ ବନ୍ଧୁ ଉତ୍କଳ ବିଶ୍ଵବଦ୍ୟାଳୟର ସେବା ନିବୃତ୍ତ ସଂସ୍କୃତ ଅଧ୍ୟାପକ ଯୁକ୍ତରାଷ୍ଟ୍ର ହାରଭାଡ ବିଶ୍ଵବିଦ୍ୟାଳୟର ପିଏଚ୍.ଡି. ଉପାଧିପ୍ରାପ୍ତ ପ୍ରଫେସର ଡକ୍ଟର ଅନାମ ଚରଣ ସ୍ୱାଇଁ ଏ ଦିଗରେ ସାହାଯ୍ୟ କରି ମୋତେ ଶୁଦ୍ଧ ସଂସ୍କରଣମାନ ଯୋଗାଇଦେବା ବ୍ୟତୀତ ସନ୍ଦେହମୋଚନ ମଧ କଲେ । ଜଣେ ସିଦ୍ଧ ମହାପୁରୁଷଙ୍କର ଚରଣତଳେ ବସି ଶାସ୍ତ୍ର ଶ୍ରବଣର ସୌଭାଗ୍ୟ ମଧ ମିଳିଲା । ପରବର୍ତ୍ତୀ ପାଳରେ ଅବସର ବିନୋଦନ ନିମିତ୍ତ ଶ୍ରୀମଦ ଭଗବଦ୍‌ଗୀତାର ବିଭିନ୍ନ ଭାଷାନୁବାଦ ଓ ସଂସ୍କରଣମାନ ପଢୁଥିଲି । ଗତ ପଚିଶ ବରଷ ହେଲା ଯାହା ମନକୁ ପାଉଥିଲା ତାକୁ ଟିପି ରଖୁଥିଲି । ଶ୍ରୀମଦ୍‌ଭଗବଦଗୀତା ବ୍ୟତୀତ ମହାଭାରତରେ ବର୍ଣ୍ଣିତ ଅନାଲୋଚିତ ଅନ୍ୟ ଗୀତାଗୁଡ଼ିକର ପାଠ ମଧ ସାରିଲି । ମତେ ଲାଗିଲା ଭଗବଦଗୀତା ତତ୍ତ୍ଵାତ୍ମକ (Theoritical) ହୋଇଥିଲେ ଅନ୍ୟ ଗୀତାଗୁଡ଼ିକ ପ୍ରୟୋଗାତ୍ମକ (Practical) । ତେଣୁ ସେଗୁଡ଼ିକର ଚିନ୍ତନଯୋଗ୍ୟ ସଂକ୍ଷିପ୍ତ ସାରାଂଶ ଲେଖି ରଖିଲି । ଓଡ଼ିଆରେ ସହଜ ଓ ବୋଧଗମ୍ୟ ହେବାକୁ ରାଜା କୃଷ୍ଣସିଂହ ଅନୁଦିତ ମହାଭାରତର ସାହାଯ୍ୟନେଇ ସଂପୃକ୍ତ ପଦ୍ୟାର୍ଥ ମଧ ଯୋଡିଲି । କଳେବର ବୃଦ୍ଧି ଭୟରେ ଓ ପଠନର ସୁବିଧା ନିମିତ୍ତ ଏହାକୁ ସଂକ୍ଷେପିତ କରି ରଖିଥିଲି । ଗୀତାବିଷୟକ ଅନ୍ୟ କେତେଖଣ୍ଡ ପୁସ୍ତକପଢ଼ି ସମାଲୋଚନାର ସାରାଂଶ ମଧ ଲେଖିଥିଲି ।

କେତେଜଣ ରସଗ୍ରାହୀବନ୍ଧୁ ଏହାର ପ୍ରଚାର ପାଇଁ ଉପଦେଶ ଦେଲେ । ମୋର ଜ୍ଞାନର ସ୍ଵଳ୍ପତା ଓ ଶାସ୍ତ୍ର ବିଚାରରେ ଅଗଭୀରତା ଯୋଗୁ ଏ ଦିଗରେ ଉଦ୍ୟମ ଧୃଷ୍ଟତା ହେବ ଜାଣି ପ୍ରକାଶନ ପାଇଁ ପରାଙ୍‌ମୁଖ ଥିବା ସମୟରେ ଡକ୍ଟର ସ୍ୱାଇଁ ଦିଗ୍‌ଦର୍ଶନ ଦେଲେ । ଶକ୍ତିହରା ଜରା ଆକ୍ରମଣରେ ଚକ୍ଷୁଦୀପ୍ତି ନିଷ୍ପ୍ରଭ ହୋଇ ଆସିବା ସମୟରେ ତାଙ୍କ ନିର୍ଦ୍ଦେଶିତ ଗ୍ରନ୍ଥମାନଙ୍କର ଗଭୀର ଅନୁଧାନ ସମ୍ଭବପର ହେଲାନାହିଁ । ତଥାପି ତାଙ୍କ ନିର୍ଦ୍ଦେଶରେ ଲେଖା ଶେଷ କଲି । ଏହା କୌଣସି ମୌଳିକ ରଚନା ନୁହେଁ । ସମୁଦାୟ ଭାଷା ମଧ ମୋର ନିଜର ନୁହେଁ । ବିଭିନ୍ନ ସମୟରେ ବିଭିନ୍ନ ପୁସ୍ତକରୁ ପଠିତ କେତେକ ମନ୍ତବ୍ୟ ଓ ଚିନ୍ତନର ପୁର୍ନଲିଖନ ମାତ୍ର । ସେଥିପାଇଁ ମୁଁ ସେହି ମହାନ୍ ଗ୍ରନ୍ଥକାରମାନଙ୍କ ପାଖରେ କୃତଜ୍ଞ, ଯଦ୍ୟପି ବର୍ତ୍ତମାନ କେଉଁ ଅଂଶ କେଉଁ ଗ୍ରନ୍ଥରୁ ଆସିଛି ଏହା

କହିବା ମୋ ପକ୍ଷରେ କଷ୍ଟକର । ବହୁ ଜିଜ୍ଞାସୁ ବରିଷ୍ଠ ନାଗରିକ ଧର୍ମଶାସ୍ତ୍ର ପଠନରେ ଆଗ୍ରହୀ ଥାଇ ମଧ ସଂସ୍କୃତର ଅଜ୍ଞତା ଯୋଗୁ ଏ ଦିଗରେ ପଶ୍ଚାଦପଦ ହେଉଥିବାବେଳେ ଏହା ସେମାନଙ୍କୁ ଶାସ୍ତ୍ର ପାଠରେ ଆଗ୍ରହାନ୍ୱିତ କରାଇ ଚିନ୍ତନର ପ୍ରେରଣା ଯୋଗାଇଲେ ମୋର ଶ୍ରମ ସାର୍ଥକ ହେବ ।

ପୁରୀ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ପଣ୍ଡିତପ୍ରବର ପ୍ରଫେସର ଡକ୍ଟର ଅଲେଖଚନ୍ଦ୍ର ଷଡ଼ଙ୍ଗୀ ଏହା ଦେଖି କୃପାକରି ପ୍ରାକ୍‌କଥନ ଲେଖିଛନ୍ତି ଓ ପୁସ୍ତିକାଟିର ସର୍ବବିଧ ସଫଳତା ଓ ବହୁଳ ପ୍ରଚାର କାମନା କରିଅଛନ୍ତି । ସେଥିପାଇଁ ତାଙ୍କୁ ଗଭୀର କୃତଜ୍ଞତା ଜଣାଇବାକୁ ମୋର ଭାବ ଓ ଭାଷା ନାହିଁ ।

ପ୍ରଥମରୁ ମୋର ପାଠପାଇଁ ଗୀତାପ୍ରେସ୍ ପ୍ରକାଶିତ ମହାଭାରତର ହିନ୍ଦି ଅନୁବାଦ ସହିତ ସଂସ୍କୃତ ସଂସ୍କରଣ ଓ କୃଷ୍ଣସିଂହ ମହାଭାରତ ଅକୁଣ୍ଠିତ ଚିତ୍ତରେ ଯୋଗାଇଦେଇଥିବାରୁ ସହିଦନଗର ନିବାସୀ ଶ୍ରୀ ଗୋପାଳ ଚନ୍ଦ୍ର ଦାଶ, ଆଇ.ଏ.ଏସ୍. ରିଟାୟାର୍ଡ ଓ ପଣ୍ଡିତ କାଶୀନାଥ ଦାଶଙ୍କ ଠାରେ ମୁଁ କୃତଜ୍ଞ ।

ପ୍ରଚ୍ଛଦପଟର ଚିତ୍ରାଙ୍କନ ପାଇଁ ସୁପ୍ରିମ ଷ୍ଟୁଡିଓର ଚିତ୍ରଶିଳ୍ପୀ ଶ୍ରୀ ଅଶୋକ ଲେଙ୍କା, ଦୃଷ୍ଟିଶକ୍ତି ନିଷ୍ପ୍ରଭ ହେତୁ ପାଣ୍ଡୁଲିପିରେ ବିକ୍ଷିପ୍ତଭାବେ ଲିଖିତ ବାକ୍ୟଗୁଡିକ ସଂଯୋଜନ କରି ଯତ୍ନର ସହିତ ଡିଟିପି କରିଥିବାରୁ ଶ୍ରୀ ଅନନ୍ତ ରଥ ଓ ସ୍ୱଳ୍ପ ସମୟ ମଧ୍ୟରେ ପ୍ରକାଶନ କାର୍ଯ୍ୟ ସଂପନ୍ନ ନିମିତ୍ତ ଶ୍ରୀରାମ ପ୍ରିଣ୍ଟରସ୍‌ର ଶ୍ରୀ ପୂର୍ଣ୍ଣଚନ୍ଦ୍ର ସାହୁଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଇ ସେମାନଙ୍କର ଉତ୍ତରୋତ୍ତର ଶ୍ରୀବୃଦ୍ଧି କାମନା କରୁଅଛି ।

**- ସଂକଳକ**

*''କର୍ମ କୁଠାରେ ଦୁର୍ବାସନା*
*ଛେଦ ତୁ ଗୁରୁବାକ୍ୟେ ସିନା''*

*- ଭାଗବତ ବାଣୀ*

# ପ୍ରାକ୍‌କଥନ

**ପ୍ରଫେସର୍ ଡକ୍ଟର ଅଲେଖଚନ୍ଦ୍ର ଷଡ଼ଙ୍ଗୀ**

*କୁଳପତି, ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ*

ସର୍ବଶାସ୍ତ୍ରମୟୀ ଗୀତା । ସକଳଶାସ୍ତ୍ରର ସାରତତ୍ତ୍ୱକୁ ଧାରଣକରି ମହାଯୋଗେଶ୍ୱର ଶ୍ରୀକୃଷ୍ଣଙ୍କର ଯୋଗସ୍ଥ ଅବସ୍ଥାରେ ମୁଖନିଃସୃତବାଣୀ ମାନବ ସମାଜର ସନ୍ମାର୍ଗ ଓ ସଦ୍‌ଜ୍ଞାନ ପ୍ରଦାନକାରିଣୀ, ପରମପୁରୁଷାର୍ଥ ମୋକ୍ଷ ପ୍ରଦାୟିନୀଗୀତା । ଅର୍ଜୁନଙ୍କୁ ବତ୍ସରୂପରେ ଗ୍ରହଣକରି ସମସ୍ତ ଉପନିଷଦ୍ ରୂପକ ଗାଈମାନଙ୍କଠାରୁ ଗୀତାମୃତ ଦୋହନ କରିଛନ୍ତି ଭଗବାନ୍ ଶ୍ରୀକୃଷ୍ଣ ସୁଧୀବୃନ୍ଦଙ୍କର ଆନନ୍ଦ ପାଇଁ । ଶ୍ରୀ ବରାହପୁରାଣର ଗୀତା ମାହାତ୍ମ୍ୟରେ ଭଗବାନ୍ ସ୍ପଷ୍ଟଭାବରେ କହିଛନ୍ତି, ''ଗୀତାଶ୍ରୟରେ ମୋର ସ୍ଥିତି, ଗୀତା ମୋର ଉତ୍ତମଗୃହ ଏବଂ ଗୀତାଜ୍ଞାନକୁ ଅବଲମ୍ବନକରି ମୁଁ ସ୍ୱର୍ଗାଦି ଲୋକତ୍ରୟର ପାଳନକର୍ତ୍ତା ।'' ବେଦ ଓ ସମସ୍ତ ଶାସ୍ତ୍ର ସିଦ୍ଧାନ୍ତିତ ବ୍ରହ୍ମଜ୍ଞାନ ଗୀତାର ସାରଭୂତ ତତ୍ତ୍ୱଭାବରେ ମନୁଷ୍ୟକୁ ଈଶ୍ୱରାଭିମୁଖୀ କରାଇବାରେ ସାମର୍ଥ୍ୟ ପ୍ରଦାନକରି ଶେଷରେ ତାକୁ ପରମେଶ୍ୱରଙ୍କଠାରେ ଲୀନ କରାଇ ଦେହବନ୍ଧରୁ ମୁକ୍ତକରିବାରେ ସାହାଯ୍ୟ କରିଥାଏ । ଗୀତାରେ ଭଗବାନ୍ ପ୍ରତିଶ୍ରୁତିବଦ୍ଧ, ଅନ୍ୟ ସମସ୍ତ କର୍ତ୍ତବ୍ୟ ତ୍ୟାଗକରି ତାଙ୍କଠାରେ କେବଳ ଶରଣନେଲେ, ତାଙ୍କର ଉପାସନାକଲେ, ମନ ଓ ପ୍ରାଣ ତାଙ୍କର ଚରଣକମଳରେ ଅର୍ପଣ କରିଦେଲେ, ସେହି କରୁଣାମୟ ଅକାରଣ କାରଣ, ଅଶରଣ ଶରଣ ମହାପ୍ରଭୁ ଭକ୍ତକୁ ସମସ୍ତ ପାପରୁ ମୁକ୍ତକରିଦେବେ, ଯୋଗକ୍ଷେମର ଦାୟିତ୍ୱ ଗ୍ରହଣ କରିବେ ଏବଂ ପରିଶେଷରେ ଜନ୍ମମରଣ ଚକ୍ରରୁ ମୁକ୍ତ କରିଦେବେ । ଏହାଠାରୁ ଅଧିକ ଦୃଢ଼ ପ୍ରତିଶ୍ରୁତି ଓ ଆଶ୍ୱାସନା ଆଉ କ'ଣ ହୋଇପାରେ ? ଭକ୍ତି, ଜ୍ଞାନ ଓ କର୍ମମାର୍ଗର ତ୍ରିବେଣୀ ସଙ୍ଗମ ଏହି ଗୀତାଶାସ୍ତ୍ର ଜାତି, ବର୍ଣ୍ଣ, ଧର୍ମ, ଲିଙ୍ଗ ନିର୍ବିଶେଷରେ ମାନବଜାତିର ପରମକଲ୍ୟାଣକାରୀ ଶାସ୍ତ୍ର ରୂପରେ ଯୁଗେ ଯୁଗେ ସ୍ୱୀକୃତ ହୋଇଛି ଏବଂ ମହାଭାରତର ଅଂଶ ବିଶେଷ ଭାବେ ସାତଶହ ଶ୍ଳୋକ ବିଶିଷ୍ଟ ଏହି ଗୀତା ତ୍ରିକାଳଦର୍ଶୀ କୃଷ୍ଣଦ୍ୱୈପାୟନ ବ୍ୟାସଙ୍କର ଅମର କୃତିକୁ ଗରିମାମଣ୍ଡିତ କରିଛି । ଅଷ୍ଟାଦଶ ଅଧ୍ୟାୟ ବିଶିଷ୍ଟ ଏହି ଶ୍ରୀମଦ୍‌ଭଗବଦ୍‌ଗୀତା ଏକଲକ୍ଷ ଶ୍ଳୋକବିଶିଷ୍ଟ ମହାଭାରତର ଭୀଷ୍ମପର୍ବର ଏକ ଅଂଶ ହୋଇଥିବାବେଳେ ଶାନ୍ତିପର୍ବର ଉତଥ୍ୟାଦି ତେରଟି ଗୀତା ଏବଂ ଅଶ୍ୱମେଧ ପର୍ବର ଅନୁଗୀତା ଓ ବ୍ରାହ୍ମଣ ଗୀତା ଦୁଇଟିକୁ ଗ୍ରହଣକରି ଷୋଡଶ ଗୀତା ବେଦର ଗୂଢ଼ାର୍ଥକୁ ପ୍ରକାଶକରି ମାନବ ସମାଜର କଲ୍ୟାଣକାରୀ ତତ୍ତ୍ୱଭାବରେ ସର୍ବଦା ବିବେଚିତ ହୋଇଛନ୍ତି ।

ଆମ୍ଭମାନଙ୍କର ପରମ ସୌଭାଗ୍ୟ, ଗୁରୁଶିଷ୍ୟ ସମ୍ବାଦ ଛଳରେ ପ୍ରକାଶିତ ଆତ୍ମବିଦ୍ୟାର ଏହି ସାରତତ୍ତ୍ୱ ଷୋଡଶଗୀତାର ସାରଭାବରେ ଆଜି ଏହିଗ୍ରନ୍ଥ ଉତ୍କଳୀୟ ସୁଧୀବୃନ୍ଦଙ୍କ ହସ୍ତରେ

ଅର୍ପିତ ହେଉଛି । ଗ୍ରନ୍ଥକାର ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାନ୍ତି, ଓଡ଼ିଶା ସରକାରଙ୍କ ଅବସରପ୍ରାପ୍ତ ପ୍ରଶାସକ ମୋର ପୂଜ୍ୟଗୁରୁ ଉତ୍କଳବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ଲବ୍ଧପ୍ରତିଷ୍ଠ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଅବସରପ୍ରାପ୍ତ ପ୍ରଫେସର୍ ଡକ୍ଟର ଅନାମଚରଣ ସ୍ୱାଇଁଙ୍କର ବାଲ୍ୟବନ୍ଧୁ । ଗ୍ରନ୍ଥ ରଚୟିତା ସଂସ୍କୃତ ସାହିତ୍ୟର ଜଣେ ନୀରବ ସାଧକ । ସଂସ୍କୃତରେ ଅଧିକ ଗବେଷଣା କରିବାର ସୁଯୋଗ ନପାଇ ମଧ୍ୟ, ଅବସର ସମୟରେ ବିଭିନ୍ନ ଭାଷା ଓ ସଂସ୍କରଣର ଗୀତାଶାସ୍ତ୍ର ଅଧ୍ୟୟନକରି କେବଳ ସାରତତ୍ତ୍ୱକୁ ଭିତ୍ତିକରି ଯେଉଁ ଅମୂଲ୍ୟଗ୍ରନ୍ଥ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି, ସେଥିପାଇଁ ସେ ଉତ୍କଳୀୟପାଠକପାଠିକାମାନଙ୍କ ମଧ୍ୟରେ ଚିର ସ୍ମରଣୀୟ ।

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଚରଣକମଳରେ ପ୍ରାର୍ଥନା କରୁଛି, ଗ୍ରନ୍ଥର ପୂଜ୍ୟ ଲେଖକ ଶ୍ରୀଯୁକ୍ତ ମହାନ୍ତି ଦୀର୍ଘନିରାମୟ ଜୀବନ ଅତିବାହିତ କରି ସାରସ୍ୱତ ସାଧନରେ ବ୍ରତୀ ରୁହନ୍ତୁ ଏବଂ ଏହିଭଳି ଆଧାତ୍ମିକ ତଥ୍ୟସମ୍ବଳିତ ଗ୍ରନ୍ଥଲେଖନ ମାଧ୍ୟମରେ ତାଙ୍କର ଅମରଲେଖନୀ ସର୍ବଦା ଚଳଚଞ୍ଚଳ ରହିଥାଉ । ସର୍ବଜନବୋଧ୍ୟ ଏହି ଅମରକୃତିର ସର୍ବବିଧ ସଫଳତା ଓ ବହୁଳ ପ୍ରସାର କାମନା କରୁଛି ।

ଜୟ ଜଗନ୍ନାଥ ।

ଅଲେଖ ଚନ୍ଦ୍ର ଷଡ଼ଙ୍ଗୀ

ତା ୧-୭-୨୦୦୩ ଶ୍ରୀଗୁଣ୍ଡିଚା



# ସୂଚୀପତ୍ର


୧. ଉପକ୍ରମଣିକା ପୃ. ୧

୨. ହିନ୍ଦୁଧର୍ମ ଓ ଗୀତା ପୃ. ୬

୩. ସ୍ମୃତିପ୍ରଧାନ ଶ୍ରୀମଦ୍ ଭଗବଦ୍‌ଗୀତାର ଉପଦେଶ

- କ) କର୍ମଯୋଗ ପୃ. ୧୦
- ଖ) ଜ୍ଞାନଯୋଗ ପୃ. ୧୨
- ଗ) ଭକ୍ତିଯୋଗ ପୃ. ୧୪

୪. ଗୀତାର ଦାର୍ଶନିକ ତତ୍ତ୍ୱ ପୃ. ୧୬

- କ) ବ୍ରହ୍ମ ଓ ଜଗତ ପୃ. ୧୮
- ଖ) ଜୀବାତ୍ମା ଓ ପରମାତ୍ମାର ସମ୍ବନ୍ଧ ପୃ. ୧୮
- ଗ) ମୁକ୍ତି ପୃ. ୧୯

୫. ଶାନ୍ତିପର୍ବର ତେରୋଟି ଗୀତା ସାର

- କ) ଉତଥ୍ୟ ଗୀତା ପୃ. ୨୦
- ଖ) ବାମଦେବ ଗୀତା ପୃ. ୨୩
- ଗ) ଋଷଭ ଗୀତା ପୃ. ୨୬
- ଘ) ବ୍ରହ୍ମଗୀତା ଗାଥା ପୃ. ୨୯
- ଙ) ଷଡଜ ଗୀତା ପୃ. ୩୧
- ଚ) ଶଂପାକ ଗୀତା ପୃ. ୩୫
- ଛ) ମଙ୍କିଗୀତା ପୃ. ୩୮
- ଜ) ବୋଧ୍ୟ ଗୀତା ପୃ. ୪୦
- ଝ) ବିଚଖ୍ନୁ ଗୀତା ପୃ. ୪୩
- ଞ) ହାରିତ ଗୀତା ପୃ. ୪୫
- ଟ) ବୃତ୍ର ଗୀତା ପୃ. ୪୭
- ଠ) ପରାଶର ଗୀତା (ବର୍ଣ୍ଣାଶ୍ରମ ଧର୍ମର ତାତ୍ପର୍ଯ୍ୟ) ପୃ. ୫୨
- ଡ) ହଂସ ଗୀତା ପୃ. ୭୭

୬. ଅଶ୍ୱମେଧ ପର୍ବର ତତ୍ତ୍ୱସାର ପୃ. ୮୧

- କ) ଅନୁଗୀତା ପୃ. ୮୪
- ଖ) ବ୍ରାହ୍ମଣଗୀତା ପୃ. ୮୭




# ସହାୟକ ଗ୍ରନ୍ଥ


| | | |
|---|---|---|
| ୧. | ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ମହାଭାରତର ଓଡ଼ିଆ ଅନୁବାଦ (ଗଦ୍ୟ) | ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର |
| ୨. | ମହାଭରତ ଶାନ୍ତି ଓ ଅଶ୍ୱମେଧ ପର୍ବ | ରାଜା କୃଷ୍ଣସିଂହ |
| ୩. | ମହାଭରତ ଭାବାନୁବାଦ (ବଙ୍ଗଳା) | ରାଜଶେଖର ବସୁ |
| ୪. | ଗୀତାପ୍ରସଙ୍ଗ (ବଙ୍ଗଳା) | ସ୍ୱାମୀ ବିବେକାନନ୍ଦ |
| ୫. | ମହାଭାରତେର ସମାଜ (ବଙ୍ଗଳା) ବିଶ୍ୱଭାରତୀ ପ୍ରକାଶନ ୧୯୮୩ | ସୁଖମୟ ଭଟ୍ଟାଚାର୍ଯ୍ୟ |
| ୬. | ଶ୍ରୀମଦ୍ ଭଗବଦ୍ଗୀତା ଓଡ଼ିଆ ଗବେଷଣା ବିଭାଗ, ବିଶ୍ୱଭାରତୀ | ଚିରଂଜନ ଦାସ |
| ୭. | ଗୀତା ରହସ୍ୟ ଅଥବା କର୍ମଯୋଗଶାସ୍ତ୍ର (ବଙ୍ଗଳା) | ଲୋକମାନ୍ୟ ତିଳକ |
| ୮. | ମହାଭାରତର ଶାନ୍ତି ଓ ଅଶ୍ୱମେଧ ପର୍ବ, ଗୀତା ପ୍ରେସ ପ୍ରକାଶିତ ହିନ୍ଦି ଅନୁବାଦ | |
| ୯. | ମହାଭାରତର ଇଂରାଜୀ ଅନୁବାଦ ୧୮୮୩ ଶାନ୍ତି ଓ ଅଶ୍ୱମେଧ ପର୍ବ | କୃଷ୍ଣମୋହନ ଗାଙ୍ଗୁଲି |
| ୧୦. | ଜୀବନ ଓ ଜୀବନୀ (ପ୍ରବନ୍ଧ ସଂଗ୍ରହ) | ଡକ୍ଟର ମାନସିଂହ |
| ୧୧. | ଶ୍ରୀମଦ ଭାଗବତ ଗୀତାର ଓଡ଼ିଆ ଟୀକା ଓ ଅନୁବାଦ ସଂଶୋଧିତ ସଂସ୍କରଣ ୧୯୮୫ | ପଣ୍ଡିତ କୁଳମଣି ଦାସ |




# ଉପକ୍ରମଣିକା

## ଗୀତାର ଆକ୍ଷରିକ ଅର୍ଥ :

ଗୁରୁଶିଷ୍ୟ କଥୋପକଥନ ଛଳରେ ଆତ୍ମବିଦ୍ୟାର ଉପଦେଶ (ଭାଷାକୋଷ ୨ୟଖଣ୍ଡ ୨୨୨୫ ପୃଷ୍ଠା) । ମାତ୍ର ଆମ୍ଭେମାନେ ଗୀତା କହିଲେ ମହାଭାରତର ଭୀଷ୍ମ ପର୍ବରେ ୨୫ଠାରୁ ୪୨ ଅଧ୍ୟାୟରେ ବର୍ଣ୍ଣିତ ଶ୍ରୀକୃଷ୍ଣ ଅର୍ଜ୍ଜୁନ ସମ୍ବାଦ ଶ୍ରୀମଦ ଭଗବଦ୍‌ଗୀତାକୁ ହିଁ ବୁଝିଥାଉ । ବିରାଟ ଗ୍ରନ୍ଥ (ଏକଲକ୍ଷ ଶ୍ଳୋକ ବିଶିଷ୍ଟ) ମହାଭାରତ ଇଉରୋପୀୟ ମହାକାବ୍ୟ ଇଲିୟାର୍ଡ ଓ ଓଡ଼େସି ଦୁଇଟିକୁ ମିଶାଇ ଯେତେ ହେବ ଆକାରରେ ତାହାର ସାତଗୁଣ । ମହାଭାରତରେ ମୋଟ ଷୋହଳଟି ଗୀତାର ବର୍ଣ୍ଣନା ଅଛି । ଭୀଷ୍ମ ପର୍ବ ବ୍ୟତୀତ ଶାନ୍ତି ପର୍ବରେ : ୧) ଉତଥ୍ୟ ଗୀତା ୯୦ ଓ ୯୧ ଅଧ୍ୟାୟ, (୨) ବାମଦେବ ଗୀତା ୯୨ରୁ ୯୪ ଅଧ୍ୟାୟ (୩) ଋଷଭ ଗୀତା ୧୨୫ରୁ ୧୨୮ ଅଧ୍ୟାୟ, (୪) ବ୍ରହ୍ମଗୀତା ଗାଥା ୧୩୬ ଅଧ୍ୟାୟ, (୫) ଷଡ୍‌ଜ ଗୀତା ୧୬୭ ଅଧ୍ୟାୟ, (୬) ଶମ୍ପାକ ଗୀତା ୧୭୭ ଅଧ୍ୟାୟ (୭) ମଙ୍କି ଗୀତା ୧୭୬ ଅଧ୍ୟାୟ, (୮) ବୋଧ୍ୟଗୀତା ୧୭୮ ଅଧ୍ୟାୟ, (୯) ବିଚଖ୍ନୁ ଗୀତା ୨୬୪ ଅଧ୍ୟାୟ, (୧୦) ହାରୀତ ଗୀତା ୨୭୨ ଅଧ୍ୟାୟ (୧୧) ବୃତ୍ରଗୀତା ୨୭୮ ଅଧ୍ୟାୟ ଓ ୨୭୯ ଅଧ୍ୟାୟ (୧୨) ପରାଶର ଗୀତା ୨୯୦ ଅଧ୍ୟାୟରୁ ୨୯୮ ଅଧ୍ୟାୟ (୧୩) ହଂସ ଗୀତା ୨୯୯ ଅଧ୍ୟାୟ; ଅଶ୍ୱମେଧ ପର୍ବରେ : (୧୪) ଅନୁଗୀତା ୧୬ରୁ ୧୯ ଅଧ୍ୟାୟ (୧୫) ବ୍ରାହ୍ମଣଗୀତା ୩୦ରୁ ୩୪ ଅଧ୍ୟାୟରେ ଦିଆଁଯାଇଅଛି ।

ଶ୍ରୀମଦ ଭଗବଦ୍ ଗୀତା ଓ ଅନୁଗୀତା ପ୍ରାୟ ଏକ । ରାଜ୍ୟ ପ୍ରାପ୍ତିର ଅନେକଦିନ ପରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ କହିଲେ, ଭଗବନ୍, ତୁମେ ଯୁଦ୍ଧର ଠିକ୍ ପୂର୍ବରୁ ମୋତେ ଯେଉଁ ସବୁ ଉପଦେଶ ଦେଇଥିଲ ସେ ଗୁଡିକ ଏବେ ମୋର ମନେ ପଡୁନାହିଁ । ଦୟାକରି ମତେ ଟିକେ ଆଉ ଥରେ ତାହା ଶୁଣାଅ । ଅର୍ଜ୍ଜୁନଙ୍କୁ ତାଙ୍କ ଅନ୍ୟମନସ୍କତା ନିମିତ୍ତ ମୃଦୁଭର୍ତ୍ସନା କରି ଶ୍ରୀକୃଷ୍ଣ ପୁଣି ସଂକ୍ଷେପରେ ଶ୍ରୀମଦ୍‌ଭଗବଦ ଗୀତାର ଉପଦେଶମାନ କହିଥିଲେ । ତାହା ହେଲା ଅନୁଗୀତା -

ମନିଷୀ ମାକ୍ସମୁଲର ତାଙ୍କ ପ୍ରଣୀତ ପ୍ରାଚ୍ୟଗ୍ରନ୍ଥମାଳା Sacred Books of the East. Vol VIII) ରେ ଭଗବଦ୍‌ଗୀତା ସହିତ ଅନୁଗୀତାର ମଧ ଅନୁବାଦ ପ୍ରକାଶ କରିଛନ୍ତି । ଇଂରେଜ ମନିଷୀ କାର୍ଲାଇଲ ମାର୍କିନ ଚିନ୍ତକ ଇମରସନଙ୍କ ସାଙ୍ଗରେ ସାକ୍ଷାତ ସମୟରେ ତାଙ୍କୁ ଖଣ୍ଡିଏ ଗୀତା

ଉପହାର ଦେଇଥିଲେ । ବିଶ୍ୱର ଇତିହାସରେ ଯଥାର୍ଥ ଗଣସାହିତ୍ୟ ଗୀତା । ଗୀତା ନିଷ୍କାମ କର୍ମଯୋଗ ଆତ୍ମସମର୍ପଣ ଯୋଗ, ଆତ୍ମ ତତ୍ତ୍ୱ ଓ ସ୍ଥିତ ପ୍ରଜ୍ଞର ଆଦର୍ଶ ଦ୍ୱାରା ଭାରତର ସ୍ୱାଧୀନତା ସଂଗ୍ରାମର ମୁକ୍ତି ଯୋଦ୍ଧାମାନଙ୍କୁ ଉଦ୍‌ବୁଦ୍ଧ କରିଅଛି । ଏହି ଗୀତା ଭାରତର ସବୁ ବିପ୍ଳବୀଙ୍କର ଅବଶ୍ୟ ପାଠ୍ୟ ଥିଲା । ଅହିଂସ ସଂଗ୍ରାମୀମାନେ ମଧ ଏହି ଗୀତାରୁ ପ୍ରେରଣା ପାଇଥିଲେ । ସହିଂସ ଓ ଅହିଂସ ଉଭୟ ପଥର ପଥିକମାନଙ୍କର ପଥ ପୃଥକ ଥାଇ ଲକ୍ଷ୍ୟ ସମାନ ଥିଲା । ମନ୍ତ୍ର ଥିଲା ବନ୍ଦେ ମାତରଂ ଓ ପାଥେୟ ଥିଲା ଗୀତା । ବିପ୍ଳବୀ ଯୋଗୀ ଋଷି ଅରବିନ୍ଦ, ଚରମପନ୍ଥୀ ନେତା ଲୋକମାନ୍ୟ ତିଲକ, ଅହିଂସା ସଂଗ୍ରାମୀ ମହାତ୍ମାଗାନ୍ଧି ଭୂଦାନ ଆନ୍ଦୋଳନ ପ୍ରବର୍ତ୍ତକ ବିନୋବାଭାବେ, ସ୍ୱ ସ୍ୱ ଆଦର୍ଶର ଆଲୋକ ଗୀତାର ଭାଷ୍ୟରେ ଦେଇଛନ୍ତି । ଗୀତାର ଷୋଡଶ ଅଧାୟ ନାସ୍ତିକ ମତକୁ ସମର୍ଥନ କରୁଛି ବୋଲି କୁହାଯାଉଛି । ସେମିତି ଖ୍ରୀଷ୍ଟ ଧର୍ମ ଭକ୍ତିଯୋଗରୁ ଉଦ୍‌ଭବ । ବିଦେଶରେ ଗୀତାର ଇଂରାଜୀ ସଂସ୍କରଣ ୧୮୭୮ ସବୁଠାରୁ ପ୍ରାଚୀନ । ଏହା ପରେ ଜର୍ମାନ୍, ଫ୍ରେଞ୍ଚ ପ୍ରଭୃତି ଭାଷା ଓ ଲାଟିନରେ ମଧ ଗୀତାର ଅନୁବାଦ ହୋଇଛି । ଜର୍ମାନିର ପଣ୍ଡିତ ହମ୍ୟୋଲ୍‌ଟ ସାହେବ, ତାଙ୍କ ଗୀତା ନିବନ୍ଧରେ ଲେଖିଛନ୍ତି ମହାଭାରତ ଅନ୍ତର୍ଗତ ଗୀତା ଗ୍ରନ୍ଥପରି ଚମତ୍କାର ଓ ସୁନ୍ଦର ଗ୍ରନ୍ଥ ଆଉ ନାହିଁ । ସବୁ ଦେଶର ସବୁ ସାହିତ୍ୟରେ ଏହି ଗୀତା ପରି ଆଉ କେଉଁଠି ତତ୍ତ୍ୱସଙ୍ଗୀତ ଲେଖା ହୋଇନାହିଁ ।

ସ୍ୱାମୀ ବିବେକାନନ୍ଦ ଐତିହାସିକ ଦୃଷ୍ଟିକୋଣ ଓ ସୂକ୍ଷ୍ମ ବିଚାର ବିଶ୍ଳେଷଣ କରି ଗୀତାକୁ ବେଦର କର୍ମକାଣ୍ଡ ଅର୍ଥାତ୍ ଉପନିଷଦ ସମୂହର ସାରାଂଶ ଓ ଭାଷ୍ୟସ୍ୱରୂପ ବୋଲି ଧରିଅଛନ୍ତି । ଏ ସଂକ୍ରାନ୍ତରେ ଲୋକମାନ୍ୟ ବାଲ୍‌ଗଙ୍ଗାଧର ତିଲକ ତାଙ୍କ ପ୍ରଣୀତ ଗୀତାରହସ୍ୟ ଅଥବା କର୍ମଯୋଗ ଶାସ୍ତ୍ରର ବିଷୟ ପ୍ରବେଶରେ ଲେଖିଅଛନ୍ତି ।

''କିନ୍ତୁ ''ଗୀତା'' ଶବ୍ଦ କେବଳ ସପ୍ତଶତୀ ଶ୍ଳୋକ ଭଗବଦ୍‌ଗୀତାକୁ ପ୍ରଯୁକ୍ତ ହୋଇ ନଥାଏ । ଏହା ଅନେକ ଜ୍ଞାନ ଗର୍ଭକ, ଗ୍ରନ୍ଥକୁ ପ୍ରଯୁକ୍ତ ହୋଇ ଥିବାର ଦେଖାଯାଏ । ତାହାର ଦୃଷ୍ଟାନ୍ତ ମହାଭାରତ ର ଶାନ୍ତିପର୍ବ ଅନ୍ତର୍ଭୁକ୍ତ ମୋକ୍ଷପର୍ବରେ କେତେକ ବିଚ୍ଛିନ୍ନ ପ୍ରକରଣରେ ପିଙ୍ଗଳଗୀତା, ସଂପାକ ଗୀତା, ମଙ୍କି ଗୀତା, ବୋଧ୍ୟ ଗୀତା, ବିଚଖ୍ନୁ ଗୀତା, ହାରୀତ ଗୀତା, ବୃତ୍ର ଗୀତା, ପରାଶର ଗୀତା ଏବଂ ହଂସ ଗୀତାର ନାମ ଦିଆଯାଇଅଛି । ଅଶ୍ୱମେଧ ପର୍ବର ଅନୁଗୀତାର ଏକ ଭାଗ ''ବ୍ରାହ୍ମଣ ଗୀତା'' -ଏହି ବିଶିଷ୍ଟ ନାମରେ ଅଭିହିତ କରାହୋଇଅଛି । ଏହାବ୍ୟତୀତ ଅବଧୂତ ଗୀତା, ଅଷ୍ଟାବକ୍ର ଗୀତା, ଈଶ୍ୱର ଗୀତା, ଉତ୍ତର ଗୀତା, କପିଳ ଗୀତା, ଗଣେଶ ଗୀତା, ଦେବୀ ଗୀତା, ପାଣ୍ଡବ ଗୀତା, ବ୍ରହ୍ମ ଗୀତା, ଭିକ୍ଷୁ ଗୀତା, ଯମ ଗୀତା, ରାମ ଗୀତା, ବ୍ୟାସ ଗୀତା, ଶିବ ଗୀତା, ସୂତ ଗୀତା, ସୂର୍ଯ୍ୟଗୀତା, ପ୍ରଭୃତି ଆହୁରି ଅନେକ ଗୀତାର ପ୍ରସିଦ୍ଧି ଅଛି । ଏମାନଙ୍କ ମଧ୍ୟରୁ କେତେଗୁଡିଏ ସ୍ୱତନ୍ତ୍ର ପଦ୍ଧତିରେ ରଚିତ ହୋଇଅଛି । ଅବଶିଷ୍ଟ ଗୁଡିକ ବିଭିନ୍ନ ପୁରାଣରୁ ଗୃହୀତ ହୋଇଅଛି । ଉଦାହରଣ ସ୍ୱରୂପ ଗଣେଶ ଗୀତା, ଗଣେଶ ପୁରାଣର ଶେଷରେ କ୍ରୀଡାଖଣ୍ଡର ୧୩୮ ଠାରୁ ୧୪୮ ଅଧ୍ୟାୟ ପର୍ଯ୍ୟନ୍ତ କଥିତ ହୋଇଅଛି । ଏହି ଗଣେଶଗୀତା ଯେ ଅଦ୍ୱାଧିକ

ପରିବର୍ତ୍ତନ ସହିତ ଭଗବଦ୍‌ଗୀତାର ଅବିକଳ ନକଲ ଏପରି କହିଲେ କ୍ଷତି ନାହିଁ । ଈଶ୍ୱର ଗୀତା, କୂର୍ମ ପୁରାଣର ଉତ୍ତରଭାଗର ପ୍ରଥମ ଏଗାର ଅଧ୍ୟାୟରେ ସନ୍ନିବେଶିତ ହୋଇଛି । ପରବର୍ତ୍ତୀ ଅଧ୍ୟାୟରେ ବ୍ୟାସ ଗୀତାର ଆରମ୍ଭ ହୋଇଛି । ସ୍କନ୍ଦ ପୁରାଣ ଅନ୍ତର୍ଗତ ସୂତ ସଂହିତାର ଚତୁର୍ଥ ଅର୍ଥାତ୍ ଯଜ୍ଞବୈଭବ ଖଣ୍ଡର ଉପରଭାଗର ପ୍ରାରମ୍ଭରେ ବ୍ରହ୍ମଗୀତା (୧ମରୁ ୧୨ଶ ଅଧ୍ୟାୟ) । ବ୍ରହ୍ମ ଗୀତାର ପରବର୍ତ୍ତୀ ଆଠ ଅଧ୍ୟାୟ ସୂତ ଗୀତା । ସ୍କନ୍ଦ ପୁରାଣର ଏହି ବ୍ରହ୍ମଗୀତାଠାରୁ ସ୍ୱତନ୍ତ୍ର ଆଉ ଏକ ବ୍ରହ୍ମଗୀତା ଯୋଗ ବାଶିଷ୍ଠର ନିର୍ବାଣ ପ୍ରକରଣର ଉତ୍ତରାର୍ଦ୍ଧରେ ୧୭୦ରୁ ୧୮୯ ସର୍ଗରେ ଦିଆଯାଇଛି । ଯମ ଗୀତା ତିନିପ୍ରକାରର । ପ୍ରଥମଟି ବିଷ୍ଣୁପୁରାଣର ତୃତୀୟ ଅଂଶର ୭ମ ଅଧ୍ୟାୟ; ଦ୍ୱିତୀୟଟି ଅଗ୍ନିପୁରାଣ ୩ୟ ଖଣ୍ଡର ୩୮୯ ଅଧ୍ୟାୟ ଓ ତୃତୀୟଟି ନୃସିଂହ ପୁରାଣର ୮ମ ଅଧ୍ୟାୟରେ ପ୍ରକାଶିତ ହୋଇଅଛି । ରାମଗୀତା ମଧ୍ୟ ଏହି ପ୍ରକାର । ମହାରାଷ୍ଟ୍ରରେ ପ୍ରଚଳିତ ରାମଗୀତା ଅଧ୍ୟାତ୍ମ ରାମାୟଣର ଉତ୍ତର ଖଣ୍ଡର ୫ମ ସର୍ଗ । ଏହି ଅଧ୍ୟାତ୍ମ ରାମାୟଣ ବ୍ରହ୍ମାଣ୍ଡ ପୁରାଣର ଏକଭାଗ ବୋଲି ସ୍ୱୀକୃତ । ମାନ୍ଦ୍ରାଜ ଅଞ୍ଚଳରେ ଅନ୍ୟ ଏକ ରାମଗୀତା ଦେଖିବାକୁ ମିଳେ । 'ଗୁରୁଜ୍ଞାନ ବାଶିଷ୍ଠତତ୍ତ୍ୱସାରାୟଣ' ନାମକ ଗ୍ରନ୍ଥରେ ଏହା ସନ୍ନିବେଶିତ । ଏହା ଏକ ବେଦାନ୍ତ ମୂଳକ ଗ୍ରନ୍ଥ । ଏଥିରେ ଜ୍ଞାନ, ଉପାସନା ଓ କର୍ମ ଏମିତି ତିନିଗୋଟି କାଣ୍ଡ ଅଛି । ତାହା ମଧ୍ୟରେ ଉପାସନା କାଣ୍ଡର ୨ୟ ପାଦର ଅଠର ଅଧ୍ୟାୟରେ ରାମଗୀତା ଓ କର୍ମକାଣ୍ଡର ୩ୟ ପାଦର ପ୍ରଥମ ପାଞ୍ଚ ଅଧ୍ୟାୟରେ ସୂର୍ଯ୍ୟ ଗୀତା ବର୍ଣ୍ଣିତ ହୋଇଅଛି । କଥିତ ଅଛି ଯେ, ଶିବଗୀତା ପଦ୍ମ ପୁରାଣର ପାତାଳଖଣ୍ଡରେ ଅଛି । କିନ୍ତୁ ଏହି ପୁରାଣର ପୁନାସ୍ଥିତ ଆନନ୍ଦ ଆଶ୍ରମ ଯେଉଁ ସଂସ୍କରଣ ପ୍ରକାଶ କରିଛନ୍ତି ତାହା ମଧ୍ୟରେ ଏହି ଶିବ ଗୀତା ନାହିଁ । ଗୌଡୀୟ ପଦୋତ୍ତର ପୁରାଣରେ ଏହା ମିଳୁଛି । ଏକଥା ପଣ୍ଡିତ ଜ୍ୱାଲା ପ୍ରସାଦ ସ୍ୱରଚିତ ଅଷ୍ଟାଦଶ ପୁରାଣ ଦର୍ଶନ ନାମକ ଗ୍ରନ୍ଥରେ ଲେଖିଅଛନ୍ତି । ନାରଦ ପୁରାଣ ଓ ପଦ୍ମ ପୁରାଣ ସହିତ ଅନ୍ୟ ପୁରାଣମାନଙ୍କରେ ଯେଉଁ ବିଷୟ କ୍ରମଣିକା ଦିଆ ଯାଇଛି ତା ମଧ୍ୟରେ ଶିବଗୀତାର ଉଲ୍ଲେଖ ଅଛି । ଶ୍ରୀମଦ୍ ଭାଗବତ ପୁରାଣର ଏକାଦଶ ସ୍କନ୍ଧର ୧୩ଶ ଅଧ୍ୟାୟରେ ହଂସଗୀତା ଓ ୨୩ଶ ଅଧ୍ୟାୟରେ ଭିକ୍ଷୁଗୀତା ବିବୃତ ହୋଇଅଛି । ୩ୟ ସ୍କନ୍ଧର କପିଳୋପାଖ୍ୟାନ ୨୦ରୁ ୩୩ ଅଧ୍ୟାୟକୁ କେହି କେହି କପିଳ ଗୀତା ନାମ ଦେଇଥାଆନ୍ତି । ଏହା ବାଦ କପିଳ ଗୀତାର ଏକ ସ୍ୱତନ୍ତ୍ର ସଂସ୍କରଣ ଆମର ଦୃଷ୍ଟିକୁ ଆସେ । ଏହି କପିଳ ଗୀତାରେ ହଠଯୋଗର ଶ୍ରେଷ୍ଠତ୍ୱ ବର୍ଣ୍ଣନା କରାଯାଇଅଛି । ଏହା ପଦ୍ମ ପୁରାଣରୁ ଗୃହୀତ ବୋଲି ଲେଖାଥିଲେ ମଧ୍ୟ ପଦ୍ମ ପୁରାଣରେ ଏହା ମିଳେ ନାହିଁ । ଏହାର ଏକ ସ୍ଥାନରେ ଜୈନ, ଜଙ୍ଗମ (ଲିଙ୍ଗାୟତ) ଏବଂ ସୁଫି ମୁସଲମାନ ସାଧୁମାନଙ୍କ ନାମ ଉଲ୍ଲେଖ ଥିବାରୁ ଏହା ମୁସଲମାନ ଅମଳର ବୋଲି କୁହାଯାଇଥାଏ । ଭାଗବତ ପୁରାଣ ପରି ଦେବୀ ଭାଗବତର ସପ୍ତମ ସ୍କନ୍ଧ ୩୧ରୁ ୪୦ ଅଧ୍ୟାୟ ପର୍ଯ୍ୟନ୍ତ ଏକ ଗୀତା ଅଛି । ଦେବୀ କଥିତ ବୋଲି ଏହା ଦେବୀ ଗୀତା ନାମରେ ବିଖ୍ୟାତ । ଏହା ଛଡା ଭଗବଦ୍ ଗୀତାର ସାର ଅଗ୍ନିପୁରାଣର ତୃତୀୟ ଖଣ୍ଡ ୩୮୦ ଅଧ୍ୟାୟ ଓ ଗରୁଡ ପୁରାଣର ପୂର୍ବ ଖଣ୍ଡର ୨୪୨ ଅଧ୍ୟାୟରେ ପ୍ରଦତ୍ତ ହୋଇଅଛି । ପୁଣି ସେହିପରି ବଶିଷ୍ଠ ରାମଚନ୍ଦ୍ରଙ୍କୁ ଯେଉଁ ଉପଦେଶ

ଦେଇଛନ୍ତି ତାହା ଯୋଗ ବାଶିଷ୍ଠ ନାମରେ ପ୍ରସିଦ୍ଧ କିନ୍ତୁ, ଏହି ଗ୍ରନ୍ଥର ଶେଷ ଅର୍ଥାତ୍ ନିର୍ବାଣ ପ୍ରକରଣରେ ଅର୍ଜୁନ ଉପାଖ୍ୟାନ ଦିଆଯାଇଛି । ଏଥିରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦେଇଥିବା ଉପଦେଶମାନ ଭଗବଦ୍‌ଗୀତାର ସାର, ଏପରିକି ଅନେକ ଶ୍ଳୋକ ଅବିକଳ ଭାବରେ ରଖାଯାଇଛି । ପୂର୍ବରୁ ଦିଆଯାଇଅଛି ଯେ, ପୁନାର ମୁଦ୍ରିତ ପଦ୍ମ ପୁରାଣରେ ଶିବ ଗୀତା ମିଳେ ନାହିଁ କିନ୍ତୁ ଏହି ସଂସ୍କରଣର ଉତ୍ତର ଖଣ୍ଡରେ ଭଗବଦ୍‌ଗୀତାର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି । ଭଗବଦ୍‌ଗୀତାର ପ୍ରତ୍ୟେକ ଅଧ୍ୟାୟରେ ଏହି ମାହାତ୍ମ୍ୟର ଏକ ଏକ ଅଧ୍ୟାୟ ରଚିତ ହୋଇଅଛି । ଏଥିରେ ଏ ସଂପର୍କୀୟ ବିଷୟ ବସ୍ତୁ ମଧ୍ୟ ବର୍ଣ୍ଣନା କରାଯାଇଅଛି । ଏହାଛଡା ବରାହ ପୁରାଣରେ ମଧ୍ୟ ଗୀତା ମାହାତ୍ମ୍ୟ ଅଛି । କୁହାଯାଏ ଶିବ ପୁରାଣ ଓ ବାୟୁ ପୁରାଣରେ ଗୀତା ମାହାତ୍ମ୍ୟ ଅଛି । କଲିକତାରେ ମୁଦ୍ରିତ ବାୟୁ ପୁରାଣରେ ଏହା ନାହିଁ । ଭଗବଦ୍ ଗୀତାର ମୁଦ୍ରିତ ସଂସ୍କରଣର ଆରମ୍ଭରେ ଗୀତା ଧ୍ୟାନ ନାମରେଏକ ନୂତନ ଶ୍ଳୋକ ପ୍ରକରଣ ଦିଆଯାଇଛି । ଏହା କେଉଁଠାରୁ ଆସିଛି ତାହା ଜଣାଯାଏ ନାହିଁ । କିନ୍ତୁ ଏହାର 'ଭୀଷ୍ମଦ୍ରୋଣ ତଟା ଜୟଦ୍ରଥଜଳା' ଏହି ଶ୍ଳୋକ ଅଳ୍ପ ଶବ୍ଦ ଭେଦରେ ସଂପ୍ରତି ପ୍ରକାଶିତ ଭାସ କବିଙ୍କର ଉରୁଭଙ୍ଗ ନାମକ ନାଟକର ଆରମ୍ଭରେ ଦିଆଯାଇଅଛି । ଏଥିରୁ ଅନୁମାନ ହୁଏ ଯେ ଏହି ଧ୍ୟାନ ଭାସ କବିଙ୍କ ସମୟ ପରେ ପ୍ରଚାରିତ ହୋଇଅଛି । ଅବଧୂତ, ଅଷ୍ଟବକ୍ର ପ୍ରଭୃତି ଦୁଇ ଚାରିଟି ଗୀତା ସ୍ୱତନ୍ତ୍ର ଭାବରେ କାହା ଦ୍ୱାରା ଲେଖାଯାଇଛି ବା କେବେ କେଉଁ ପୁରାଣରୁ ଗୃହୀତ ହୋଇଛି ତାହା ଠିକଣା ହୋଇ ପାରୁନାହିଁ । ପାଣ୍ଡବ ଗୀତା ବା ପ୍ରପର୍ଣ୍ଣ ଗୀତା ଭଗବତୀଗୀତା ପ୍ରଭୃତି ପୌରାଣିକ ସଂଗ୍ରହ ଗ୍ରନ୍ଥ । ଏସବୁ ଭକ୍ତମାନଙ୍କର ଆବେଗମୟ ପ୍ରାଣର ପ୍ରାର୍ଥନା । ଭଗବଦ୍‌ଗୀତା ବ୍ୟତୀତ ବନ ପର୍ବରେ ଅଷ୍ଟାବକ୍ର ବନ୍ଦି ସମ୍ବାଦ, ଦ୍ୱିଜ ବ୍ୟାଧ ସମ୍ବାଦ, ଯକ୍ଷ ଯୁଧିଷ୍ଠିର ସମ୍ବାଦ, ଉଦ୍‌ଯୋଗ ପର୍ବରେ ସନତ-ସୁଜାତୀୟ ପ୍ରକରଣ, ଶାନ୍ତି ପର୍ବରେ ମୋକ୍ଷ ଧର୍ମ ଓ ଅଶ୍ୱମେଧାଦିକ ପର୍ବର ଗୁରୁଶିଷ୍ୟ ସମ୍ବାଦ ଆଧ୍ୟାତ୍ମ ଶାସ୍ତ୍ର ରୂପେ ପ୍ରସିଦ୍ଧି ପାଇଛି ।''

ଅନେକ ଗୁଡିଏ ଗୀତା ଥିଲେ ମଧ୍ୟ ଭଗବଦ୍‌ଗୀତାର ଶ୍ରେଷ୍ଠତ୍ୱ ନିର୍ବିବାଦ ହେବାରୁ ଉତ୍ତରକାଳର ବୈଦିକ ପଣ୍ଡିତମାନେ ଅନ୍ୟ ଗୀତା ପ୍ରତି ବେଶି ମନୋଯୋଗ ନ ଦେଇ କେବଳ ଭଗବଦ୍ ଗୀତାର ପର୍ଯ୍ୟାଲୋଚନା କରି ତଦ୍ ଅନ୍ତର୍ଗତ ତାତ୍ପର୍ଯ୍ୟ ସ୍ୱକୀୟ ଧର୍ମଭ୍ରାତାମାନଙ୍କୁ ଦେବାର ସାର୍ଥକତା ଅଛି- ଏହା ବିବେଚନା କରିଅଛନ୍ତି ଓ ସେହିପରି ଲେଖି ଅଛନ୍ତି ବୋଲି ଲୋକମାନ୍ୟ ତିଳକଙ୍କର ଅଭିମତ । ମହାଭାରତ ରତ୍ନହାରର ଗୀତା ମଧ୍ୟମଣି ।

ଗୀତା କେବଳ କଠିନ ଦର୍ଶନର ତାତ୍ତ୍ୱିକ ବ୍ୟାଖ୍ୟା ନୁହେଁ । ଏକାଧାରରେ ଏହା ତତ୍ତ୍ୱ ଓ ଅଭ୍ୟାସର ଏକ ସମନ୍ୱୟୀ ଗ୍ରନ୍ଥ । ଏକାଧାରରେ ଏହା ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ର । ସଂସ୍କୃତ ସାହିତ୍ୟରେ ଭଗବଦ୍‌ଗୀତାକୁ ବ୍ରହ୍ମବିଦ୍ୟାନ୍ତର୍ଗତ କର୍ମ ଯୋଗଶାସ୍ତ୍ର ବୋଲି କୁହାଯାଇଅଛି ।

ଗୀତା ଆମ ଦେଶର ପ୍ରଧାନ ପାରାୟଣ ପୋଥି । ପ୍ରାୟ ପ୍ରତ୍ୟେକ ବର୍ଷ ଏହାର ନୂଆ ନୂଆ ସଂସ୍କରଣ ବାହାରୁଅଛି । ଗ୍ରନ୍ଥର ଲୋକପ୍ରିୟତା ଏଥିରୁ ଅନୁମାନ କରାଯାଇପାରେ । ହିନ୍ଦୁ ରାଜତ୍ୱର

ଶେଷ ପର୍ଯ୍ୟାୟରେ ଯେତେବେଳେ ବୌଦ୍ଧ ଧର୍ମର ଜ୍ୟୋତି ଲିଭି ଲିଭି ଆସୁଥାଏ ସେତେବେଳେ ହିନ୍ଦୁ ଦର୍ଶନର ନାନା ଶାଖା ବାହାରି ନାନା ମତବାଦ ପ୍ରଚାର କରିଥିଲେ । ମାତ୍ର ସମସ୍ତଙ୍କର ଗ୍ରହଣୀୟ ଶାସ୍ତ୍ର ହୋଇ ପାରିଥିଲା 'ଭଗବଦ୍‌ଗୀତା' । ନିଜ ମତର ପ୍ରତିପାଦନ ନିମିତ୍ତ ଶଙ୍କରାଚାର୍ଯ୍ୟ, ପ୍ରଥମେ ଗୀତାର ଭାଷ୍ୟ ଲେଖିଲେ । ତାହା ପ୍ରାୟ ଏକ ହଜାରରୁ ବେଶି ବର୍ଷ ତଳର କଥା । ତାର ଦୁଇଶ ବର୍ଷ ପରେ ୧୧ଶ ଶତାବ୍ଦୀରେ ରାମାନୁଜ ଭାଷ୍ୟ ଲେଖିବା ବେଳକୁ ଶଙ୍କରଙ୍କର ଶିଷ୍ୟ ଆନନ୍ଦ ଗିରି (୧୪ଶ ଶତାବ୍ଦୀ) ଓ ମଧୁସୂଦନ (୧୬ଶ ଶତାବ୍ଦୀ) ନିଜ ଭାଷ୍ୟ ଲେଖି ସେହି ମତକୁ ଦୃଢ଼ତର କଲେ । ଯମୁନାଚାର୍ଯ୍ୟ ମଧ ନିଜ ଭାଷ୍ୟ ଲେଖିଲେ । ସେମିତି ବଲ୍ଲଭାଚାର୍ଯ୍ୟ ଭାଷ୍ୟ ଲେଖି ନିଜ ମାର୍ଗର ପ୍ରଚାର କରାଇଥିଲେ । ସେଇ ଯୁଗ ପରେ ଏଇ ଯୁଗରେ ମଧ ଲୋକମାନ୍ୟ ତିଳକ, ଯୋଗୀ ଶ୍ରୀ ଅରବିନ୍ଦ, ମହାତ୍ମାଗାନ୍ଧି, ଦାର୍ଶନିକ ପଣ୍ଡିତ ରାଧାକୃଷ୍ଣ ଏହାର ଭାଷ୍ୟ ରଚନା କରିଅଛନ୍ତି ଓ ଏଗୁଡିକ ଲୋକପ୍ରିୟ ହୋଇଛି ।

ଓଡ଼ିଶାରେ ଅନେକ ଦିନରୁ ସଂସ୍କୃତ ସାହିତ୍ୟର ଆଲୋଚନା ସୃଷ୍ଟି ହୋଇ ଆସିଥିଲେ ମଧ ଏହା ମୁଖ୍ୟତଃ କେବଳ ବ୍ରାହ୍ମଣମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଏପରିକି ଶାସ୍ତ୍ର ପୁରାଣ ଶୁଣିବା ଲାଗି ମଧ ଅବ୍ରାହ୍ମଣଙ୍କୁ ବାରଣ କରାଯାଇଥିଲା । କିନ୍ତୁ ଦ୍ୱାଦଶ ଶତାବ୍ଦୀର ପରଠାରୁ ଲୌକିକ ଭାଷା ଲାଗି ଖୁବ୍ ଉତ୍ସାହ ଦେଖାଗଲା । ଏ ଦିଗରେ ସାରଳା ଦାସଙ୍କର ମହାଭାରତ ବୋଧ ହୁଏ ପ୍ରଥମ । ଆଜିକୁ ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ଓଡ଼ିଶାରେ ଏକ ବିରାଟ ଧର୍ମ ସମନ୍ୱୟର ଆନ୍ଦୋଳନ ହୋଇଥିଲା । ବିଭିନ୍ନ ସମୟର ବୈଦିକ, ତାନ୍ତ୍ରିକ, ବୌଦ୍ଧ ଓ ବୈଷ୍ଣବ ଧର୍ମାଚାରର ସଂଶ୍ଳେଷଣରେ ସେହି ସମୟରେ ଯେଉଁ ଲୋକମୁଖୀ ଜୀବନ ଧର୍ମ ଗଢ଼ି ଉଠିଥିଲା, ସାହିତ୍ୟ ପ୍ରସିଦ୍ଧ ପଞ୍ଚସଖା ସେହି ଆନ୍ଦୋଳନର ମୂଳ ଚାଳକରୂପେ ପ୍ରସିଦ୍ଧ । ବଳରାମ, ଜଗନ୍ନାଥ, ଯଶୋବନ୍ତ, ଶିଶୁ ଅନନ୍ତ ଓ ଅଚ୍ୟୁତାନନ୍ଦ ହେଉଛନ୍ତି ଏଇ ପାଞ୍ଚୋଟି ରତ୍ନ । ଓଡ଼ିଶାର ଧର୍ମ ଜୀବନରୁ ସାରନେଇ ଏମାନଙ୍କର ବିକାଶ । ସେମାନଙ୍କ ମଧରେ ବଳରାମ ଦାସ ସବୁଠାରୁ ବୟସରେ ବଡ, ସେ ମତ୍ତ ବଳରାମ ଦାସ ନାମରେ ପରିଚିତ । ଏହି ବଳରାମଙ୍କର ଓଡ଼ିଆରେ 'ଦାଣ୍ଡି ରାମାୟଣ' ଓ 'ଶ୍ରୀମଦ୍ ଭଗବଦ୍‌ଗୀତା' ପ୍ରାଚୀନତମ ଓ ଅତି ପ୍ରସିଦ୍ଧ ଗ୍ରନ୍ଥ । (ଅଧ୍ୟାପକ ଚିତ୍ତରଂଜନ ଦାସ)

ଧରାକୋଟ ରାଜା କୃଷ୍ଣସିଂହ ସଂସ୍କୃତ ମହାଭାରତର ଆକ୍ଷରିକ ପଦ୍ୟ ଅନୁବାଦ କରିଥିଲେ ଅଷ୍ଟାଦଶ ଶତାବ୍ଦୀରେ । ମହାଭାରତ ବର୍ଣ୍ଣିତ ଶାନ୍ତି ପର୍ବ ଓ ଅଶ୍ୱମେଧାଦିକ ପର୍ବର ସବୁ ଗୀତାର ସାର ଅନୁବାଦ ଏଥିରେ ମିଳେ । ରଚିତ ପୁସ୍ତକର ସ୍ଥଳ ବିଶେଷରେ ସେ ଅନୁବାଦ ଦିଆ ଯାଇଅଛି ।



# ହିନ୍ଦୁ ଧର୍ମ ଓ ଗୀତା

ଯେଉଁ ଧର୍ମର ତତ୍ତ୍ୱ ଦାର୍ଶନିକ ସତ୍ୟରେ ପ୍ରତିଷ୍ଠିତ ନୁହେଁ ତାହା ଧର୍ମ ପଦବାଚ୍ୟ ନୁହେଁ । ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ଦାର୍ଶନିକ ତତ୍ତ୍ୱର ଅବତାରଣା କରିଅଛନ୍ତି ତାହା ଭାରତୀୟ ଦର୍ଶନ - ସାଂଖ୍ୟ ପୂର୍ବ ମୀମାଂସା ଓ ବେଦାନ୍ତ ଓ ପାତଞ୍ଜଳ ଯୋଗର ମତ ଉପରେ ପ୍ରତିଷ୍ଠିତ । ଦାକ୍ଷିଣାତ୍ୟର ରାମକୃଷ୍ଣ ତପୋବନର ସ୍ୱାମୀ ଚିଦ୍‌ଭବାନନ୍ଦ; ୧-ଦର୍ଶନ, ୨-ଇତିହାସ, ୩-ପୁରାଣ ଓ ୪-କ୍ରିୟା (Ritual) ପଦ୍ଧତିକୁ କୌଣସି ଧର୍ମର ଚାରିଗୋଟି ଅଙ୍ଗଭାବେ ବର୍ଣ୍ଣନା କରିଅଛନ୍ତି ।

ପୃଥିବୀର ଅନ୍ୟାନ୍ୟ ପ୍ରଧାନ ଧର୍ମପରି ହିନ୍ଦୁଧର୍ମ କୌଣସି ଏକ ବ୍ୟକ୍ତି ଦ୍ୱାରା ପ୍ରଚାରିତ ବା ପ୍ରତିଷ୍ଠିତ ନୁହେଁ । ଏହା ଏପରି ବ୍ୟାପ୍ତ ଯେ ଏହା ମଧ୍ୟରେ ଅସଂଖ୍ୟ ଉପଧର୍ମ ସୃଷ୍ଟି ହୋଇଛି, ପ୍ରଚାରିତ ହେଇଛି ଓ ବିନା ବାଧାରେ ହିନ୍ଦୁଧର୍ମ ମଧ୍ୟରେ ରହି ପାରିଛି । ହିନ୍ଦୁ ଧର୍ମର ବ୍ୟାପକତା ଓ ବିସ୍ତୃତି ଯୋଗୁ ଏହାର ସୀମା ଓ ସ୍ୱରୂପ ସହଜରେ ନିରୂପିତ ହୋଇପାରେ ନାହିଁ । ସେଇଥିପାଇଁ ଅନ୍ୟଧର୍ମୀମାନେ କହିଥାନ୍ତି ଏହା ଏକ ଧର୍ମ ନୁହେଁ, ବରଂ ଏକ ସାମାଜିକ ଆଚାର ସଂହିତା । ଅନେକ ପାଶ୍ଚାତ୍ୟବାସୀଙ୍କର ଧାରଣା, ହିନ୍ଦୁ ଧର୍ମରେ ପୌତ୍ତଳିକତାର ସ୍ଥାନ ପ୍ରଧାନ । ମାତ୍ର ଏହା ଭ୍ରମପୂର୍ଣ୍ଣ । ଅନେକ ହିନ୍ଦୁ ସଂପ୍ରଦାୟ ପିତୁଳା ପୂଜାର ବିରୋଧୀ । ଅନ୍ୟ ଧର୍ମମାନଙ୍କରେ ସାଧନାର ପଥ ଏକ ବା ଅଳ୍ପ, ମାତ୍ର ହିନ୍ଦୁ ଧର୍ମରେ ଭଗବାନଙ୍କୁ ଲାଭ କରିବା ଉଦ୍ଦେଶ୍ୟରେ ଅନେକ ପଥ ଦର୍ଶାଯାଇଛି । ଏହାର କାରଣ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କର ମତ ଦ୍ୱାରା ଏହି ଧର୍ମ ନିୟନ୍ତ୍ରିତ ହୋଇନାହିଁ । ନାନା ମୁନିଙ୍କର ନାନା ମତ ଘେନି ବହୁ ଶତାବ୍ଦୀ ଧରି ଏହା ପରିପୁଷ୍ଟ ହୋଇଅଛି । ବିରାଟ ଭାରତ ଭୂଖଣ୍ଡର ବହୁବିଧ ରୁଚିକୁ ଏହି ଧର୍ମ ଭିନ୍ନ ଭିନ୍ନ ମତ ଓ ପଥ ରୂପେ ଖାଦ୍ୟ ଯୋଗାଇ ଆସିଛି । ବିଭିନ୍ନ ମତ ଓ ପଥ ମଧ୍ୟରେ ଏକ ଅନବଚ୍ଛିନ୍ନ ଐକ୍ୟ ଯେ ପ୍ରବାହିତ ହେଉଛି ଏହା କେହି ଅସ୍ୱୀକାର କରିବେ ନାହିଁ । ଭାରତର ବହୁବିଧ ଉପଧର୍ମ ଏପରିକି ବୌଦ୍ଧ ଓ ଜୈନ ଧର୍ମ ସେହି ଐକ୍ୟ ଉପରେ ପ୍ରତିଷ୍ଠିତ । ଏହି ଐକ୍ୟ ଜନ୍ମାନ୍ତର ଓ କର୍ମଫଳବାଦ । ଖ୍ରୀଷ୍ଟିଆନ ଓ ମୁସଲମାନ ମାନେ ବିଶ୍ୱାସ କରନ୍ତି ଯେ ମନୁଷ୍ୟର ମୃତ୍ୟୁ ସଙ୍ଗେ ତାର ଆତ୍ମା ଚିରନିଦ୍ରା ଲାଭ କରେ । ସୃଷ୍ଟିର ଶେଷ ଦିନରେ ବିଧାତାଙ୍କର ତୂର୍ଯ୍ୟନାଦରେ ସେହି ପ୍ରେତାତ୍ମାମାନଙ୍କର ନିଦ୍ରା ଭଙ୍ଗ ହେବ । ଇହ ଜୀବନର ସମସ୍ତ କାର୍ଯ୍ୟକଳାପ ସେହି ଦିନ ବିଚାର କରାଯାଇ ସେମାନଙ୍କୁ ଶାସ୍ତି ବା ପୁରସ୍କାର ମିଳିବ । କିନ୍ତୁ ହିନ୍ଦୁଧର୍ମ କ୍ଷେତ୍ରରେ ବିଶ୍ୱାସକରାଯାଏ ଯେ, ଦେହର ବିନାଶ ସହିତ ଆତ୍ମାର ବିନାଶ ହୁଏ ନାହିଁ କି ଆତ୍ମା ମଧ ନିଦ୍ରା ଯାଏ ନାହିଁ । ଇହ ଜୀବନର କର୍ମ ଉପରେ ଫଳ ଭୋଗିବାକୁ ଆତ୍ମା ପୁଣି ନୂତନ ଜନ୍ମ ଧାରଣ କରି ପୃଥିବୀକୁ ଆସେ । ମନୁଷ୍ୟ ଯୋନି ବା ଅନ୍ୟ ନୀଚ ଯୋନିରେ ସେ

ଜନ୍ମ ଗ୍ରହଣ କରିବ ଏହି ବିଷୟରେ ମତାନ୍ତର ଥାଇପରେ ମାତ୍ର ଜନ୍ମାନ୍ତରରେ ସମସ୍ତଙ୍କର ବିଶ୍ୱାସ । ହିନ୍ଦୁ ଧର୍ମର ସାମାଜିକ ଜୀବନରେ ଏହା ଏକ ମେରୁଦଣ୍ଡ ବୋଲି କୁହାଯାଇପାରେ । ଏହି ବିଶ୍ୱାସ ଉପରେ ଚିତ୍ତ ରଖି ହିନ୍ଦୁର ଯୋଗ, ସାଧନା, ସନ୍ନ୍ୟାସ, କୃଚ୍ଛ୍ରସାଧନା ପ୍ରଭୃତି ବହୁମତ ଓ ବହୁପଥ ରହିଛି । କିପରି ଭାବରେ ସତ୍ ଜୀବନଯାପନ କଲେ ସେ ପୁଣ୍ୟ ଅର୍ଜନ କରିବ ଓ ପର ଜନ୍ମରେ ଦୁଃଖ ଯନ୍ତ୍ରଣାରୁ ମୁକ୍ତି ପାଇବ ଓ ଶେଷରେ ପରମାତ୍ମାଙ୍କ ସହିତ ମିଳିତ ହେବ ଏହାହିଁ ହିନ୍ଦୁ ଜୀବନର ଲକ୍ଷ୍ୟ ।

କେତେକଙ୍କର ଧାରଣା ସଂସାରର ସମସ୍ତ ପ୍ରଲୋଭନକୁ ଆଡେଇ ଦେଇ ବଣ ଜଙ୍ଗଲରେ ତପସ୍ୟା କଲେ ମୁକ୍ତି ଲାଭ ସହଜ ହୁଏ ଓ ତାହା ହିନ୍ଦୁ ଧର୍ମର ଆଦର୍ଶ । ଏହା ମଧ୍ୟ ଭ୍ରମାତ୍ମକ । ଗୀତା ହିନ୍ଦୁ ଧର୍ମର ଏକ ଶ୍ରେଷ୍ଠ ଗ୍ରନ୍ଥ । 'ସନ୍ନ୍ୟାସ' ଗୀତାର ଆଦର୍ଶ ନୁହେଁ । ସଂସାରରେ ରହି ସୁଖୀ ଗୃହସ୍ଥ ଜୀବନଯାପନ କରି ପୁଣ୍ୟ ସଂଚୟ କରାଯାଇପାରେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୂଦ୍ର ଚାରି ପ୍ରକୃତିର ଲୋକ ସଂସାରରେ ଜନ୍ମ ଗ୍ରହଣ କରନ୍ତି । ସେମାନଙ୍କର ରୁଚି ଓ ପ୍ରକୃତି ଅନୁସାରେ କର୍ତ୍ତବ୍ୟ ନିରୂପଣ କରାଯାଇଛି । ଜଗତରେ କର୍ମ ପ୍ରଧାନ । କୌଣସି କର୍ମ ହେୟ ବା ତୁଚ୍ଛ ନୁହେଁ । ପ୍ରତ୍ୟେକ କର୍ମର ସାମାଜିକ ମୂଲ୍ୟ ଓ ମର୍ଯ୍ୟାଦା ରହିଛି । ନିଜ ପ୍ରକୃତି ଅନୁରୂପ କର୍ମ ହେୟ ହେଲେ ମଧ୍ୟ ତାହା ପରିତ୍ୟାଗ କରିବା ଉଚିତ୍ ନୁହେଁ । ମୂଳ କଥା, କର୍ମ ସଂପାଦନରେ କୌଣସି ଆସକ୍ତି ବା ଅହଂକାର ରଖିବା ଉଚିତ୍ ନୁହେଁ । ଆସକ୍ତି ଦୁଃଖର କାରଣ । ନିରାସକ୍ତ ଭାବରେ ଜୟ ପରାଜୟ ଲାଭା ଲାଭକୁ ସମାନ ଭାବରେ ବରଣ କରି କର୍ତ୍ତବ୍ୟ ସଂପାଦନ ହେଉଛି ବିଜ୍ଞ ବ୍ୟକ୍ତିର ଲକ୍ଷଣ । କର୍ମରେ କେବଳ ମନୁଷ୍ୟର ଅଧିକାର ଅଛି । କର୍ମର ଫଳାଫଳ ଅନ୍ୟ ଏକ ଅଦୃଶ୍ୟ ଶକ୍ତି ହାତରେ । ସେହି ଅଦୃଶ୍ୟ ପୁରୁଷ ଜଗତର ଆଦି ଅନନ୍ତ । ଜୀବଗଣ ତାଙ୍କରିଠାରୁ ଉତ୍ପନ୍ନ ଓ ଶେଷରେ ତାଙ୍କରିଠାରେ ଲୀନ ହୋଇଥାଆନ୍ତି । ଯୁଗଯୁଗାନ୍ତର ଧରି ବିଶ୍ୱ ଜଗତର ସୃଷ୍ଟି, ସ୍ଥିତି, ପ୍ରଳୟ ମଧ୍ୟରେ ସେ'ହିଁ ଏକା ସ୍ଥିର ଓ ସନାତନ । ମନୁଷ୍ୟ କେବଳ ନିମିତ୍ତ ମାତ୍ର । କୌଣସି କାର୍ଯ୍ୟର ସଫଳତା ଲାଗି ଅହଙ୍କାର କରିବା ଅଜ୍ଞାନତା । ମନୁଷ୍ୟର ଉଚିତ୍, କେବଳ ଭଗବଦ୍ ନିର୍ଦ୍ଦିଷ୍ଟ ହୋଇ ସେ ତା'ର କର୍ତ୍ତବ୍ୟ କର୍ମ ସମ୍ପାଦନ କରିବା । ନିରାସକ୍ତ ଓ ନିରହଙ୍କାର ଭାବରେ କର୍ମ କରିପାରିଲେ, ସେହି ପରମ ପୁରୁଷଙ୍କୁ ଆତ୍ମା ଅନୁଭବ କରି ପାରିବ । କର୍ମ ହିଁ, ସକଳ ଧର୍ମାଚରଣର ମୂଳ । କର୍ମସାଧନ, ସନ୍ନ୍ୟାସ, ଜ୍ଞାନ ଓ ତପସ୍ୟାଠାରୁ ଉତ୍କୃଷ୍ଟ । ଏହା ହିଁ ଗୀତାର ଉଦାର ବାଣୀ ।

*(ଡକ୍ଟର ମାନସିଂହଙ୍କର ହିନ୍ଦୁଧର୍ମ ଓ ଗୀତା ପ୍ରବନ୍ଧର ସାରାଂଶ)*

ଉପନିଷଦର ଦାର୍ଶନିକ ତତ୍ତ୍ୱ ସଂକ୍ଷିପ୍ତ ଭାବେ ଶ୍ରୀମଦ୍ ଭଗବଦଗୀତାରେ ଆତ୍ମ ପ୍ରକାଶ କରିଅଛି । ବେଦାନ୍ତର ତିନିଗୋଟି ପ୍ରସ୍ଥାନ ହେଲା: ଉପନିଷଦ, ଗୀତା ଓ ବ୍ରହ୍ମସୂତ୍ର । ଗୀତାର ଭାଷ୍ୟକାର ପଣ୍ଡିତ କୁଳମଣି ଦାଶଙ୍କ ମତରେ ଉପନିଷଦ, ବେଦାନ୍ତ ଦର୍ଶନ ଓ ଶ୍ରୀମଦ

ଭଗବଦ୍‌ଗୀତା ଏହି ତିନି ଗ୍ରନ୍ଥ ସନାତନ ବୈଦିକ ଧର୍ମରେ ପ୍ରସ୍ଥାନ ତ୍ରୟୀ ନାମ ପ୍ରାପ୍ତ ହୋଇଅଛି । ଉପନିଷଦ ସମୂହ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଋଷିଙ୍କ ଦ୍ୱାରା ରଚିତ ହୋଇଥିବାରୁ ସେମାନଙ୍କ ମଧ୍ୟରେ ବିଚାର ବିଭିନ୍ନତା ଦେଖାଯାଏ । ଏହି ବିଚାର ବିରୋଧ ଦୂରକରିବା ପାଇଁ ମହର୍ଷୀ ବାଦରାୟଣ ବେଦାନ୍ତ ଦର୍ଶନ ପ୍ରଣୟନ କରି ତହିଁରେ ପ୍ରାମାଣିକ ଉପନିଷଦ ମାନଙ୍କର ଏକବାକ୍ୟତା ପ୍ରତିପାଦନ କରିଥିଲେ । ବ୍ରହ୍ମସୂତ୍ର ଏହି ବେଦାନ୍ତ ଦର୍ଶନର ଅନ୍ୟନାମ । ଉପନିଷଦ ମାନଙ୍କର ମତକୁ ବେଦାନ୍ତ ଦର୍ଶନରେ ଆପ୍ତ ବାକ୍ୟରୂପେ ଗ୍ରହଣ କରାଯାଇଛି । ଉପନିଷଦ ଶ୍ରୁତି ପ୍ରସ୍ଥାନ । ଗୀତା ସ୍ମୃତି ପ୍ରସ୍ଥାନ ଓ ବ୍ରହ୍ମସୂତ୍ର ନ୍ୟାୟ ପ୍ରସ୍ଥାନ । ଗୀତାକୁ ଉପନିଷଦ, ବ୍ରହ୍ମବିଦ୍ୟା ଯୋଗଶାସ୍ତ୍ର ମଧ୍ୟ କୁହାଯାଇଥାଏ । ଗୀତାର ପ୍ରତି ଅଧ୍ୟାୟର ସମାପ୍ତିରେ 'ଶ୍ରୀମଦ ଭଗବଦ୍‌ଗୀତା ଉପନିଷଦସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ, ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ' ଇତ୍ୟାଦି କୁହାଯାଇଛି । ଗୀତାରଏହି ଅଧ୍ୟାୟ ଶେଷାଂଶ ଶ୍ଳୋକରେ 'ବ୍ରହ୍ମସୂତ୍ର' ପଦ ଶବ୍ଦ ଦେଖି କେହି କେହି ପାଶ୍ଚାତ୍ୟ ପଣ୍ଡିତ ଗୀତା ବ୍ରହ୍ମସୂତ୍ର ରଚନାର ପରେ ଲେଖାଯାଇଛି ବୋଲି ମତ ବ୍ୟକ୍ତ କରିଅଛନ୍ତି । ମାତ୍ର ବ୍ରହ୍ମସୂତ୍ରରେ ଏପରି ସୂତ୍ର ଅଛି ଯେଉଁଥିରେ ଗୀତାର ରଚନାକୁ ଲକ୍ଷ୍ୟ କରାଯାଇଅଛି । ଏସବୁ ନେଇ ପଣ୍ଡିତମାନେ ଗ୍ରହଣ କରିନେଇଅଛନ୍ତି ଯେ ଉଭୟ ଗ୍ରନ୍ଥ ଏକ ସମୟରେ ରଚିତ । ଏହାର କାରଣ ମଧ୍ୟ ଏହା ଯେ ଜଣେ ଗ୍ରନ୍ଥକାର (ମହର୍ଷି କୃଷ୍ଣ ଦ୍ୱୈପାୟନ ବ୍ୟାସ) ଉଭୟ ଗ୍ରନ୍ଥ ରଚନା କରିଅଛନ୍ତି ।

ଆଉ କେତେକ ପାଶ୍ଚାତ୍ୟ ପଣ୍ଡିତ କହନ୍ତି ଗୀତା ମହର୍ଷି ବେଦବ୍ୟାସଙ୍କ ଦ୍ୱାରା ଲିଖିତ ନୁହେଁ । ପରେ କୌଣସି ଶକ୍ତିଶାଳୀ ପଣ୍ଡିତ ଏହାକୁ ମହାଭାରତରେ ପୁରାଇ ଦେଇଛନ୍ତି । ଏହା ପ୍ରକ୍ଷିପ୍ତ । ସେମାନଙ୍କର ଯୁକ୍ତି ହେଲା ଯୁଦ୍ଧର ଆରମ୍ଭରେ ଅଷ୍ଟାଦଶ ଅଧ୍ୟାୟରେ ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ ଉପଦେଶ ଦେବା କେବେ ସମ୍ଭବପର ହୋଇପାରିନଥିବ । ଏହା ନିତାନ୍ତ ବିସଦୃଶ ଓ ଅଯୌକ୍ତିକ ଜଣାପଡୁଛି । ମାତ୍ର ଆମ୍ଭମାନଙ୍କର ମନେ ରଖିବା ଉଚିତ ଯେ ଏ ଯୁକ୍ତି ସାରହୀନ । ଏହାର କୌଣସି ଭିତ୍ତି ନାହିଁ । ଗୀତା ପ୍ରଚାର ନିମିତ୍ତ ସେହି ସ୍ଥଳ ଓ କାଳ ଠିକ ଅନୁକୂଳ ଥିଲା । ଅର୍ଜୁନ, ଭକ୍ତଶ୍ରେଷ୍ଠ, ସଖା, ବୀରଶ୍ରେଷ୍ଠ । ସେ ଶ୍ରୋତା । ବକ୍ତା ସ୍ୱୟଂ ଜ୍ଞାନୀଶ୍ରେଷ୍ଠ ଶ୍ରୀକୃଷ୍ଣ । ଏହି ସମୟ ଅତି ବିଷମ । ଜୀବନ ମରଣର ସନ୍ଧିସ୍ଥଳ । ଅର୍ଜୁନ ନାନା ପ୍ରକାର ଅସ୍ତ୍ର ଶସ୍ତ୍ର ବିଭିନ୍ନ ସୂତ୍ରରୁ ସଂଗ୍ରହ କରି କୌରବମାନଙ୍କ ସହିତ ଯୁଦ୍ଧ କରିବାକୁ ଜୀବନଭରି ପ୍ରସ୍ତୁତି କରିସାରିଥିଲେ । ମାତ୍ର ତାଙ୍କର ହଠାତ ବିଷାଦ ଆରମ୍ଭ ହେଲା । ଅଥଚ ସେ ପର୍ଯ୍ୟନ୍ତ ଯୁଦ୍ଧ ଆରମ୍ଭ ହୋଇନାହିଁ । ଶଙ୍ଖନାଦ, ବ୍ୟୁହରଚନା ଆଦି ଯୁଦ୍ଧର ପ୍ରସ୍ତୁତି କାର୍ଯ୍ୟ ଚାଲିଛି । ସେତେବେଳ ପର୍ଯ୍ୟନ୍ତ ଯୁଧିଷ୍ଠିର, ଭୀଷ୍ମ, ଦ୍ରୋଣ ଆଦି ଗୁରୁଙ୍କର ପାଦ ବନ୍ଦନା କରି ଯୁଦ୍ଧର ଅନୁମତି ଗ୍ରହଣ କରିନାହାନ୍ତି । ଯୋଗ ପ୍ରଭାବରେ ଏହି ଯୁଦ୍ଧାରମ୍ଭର କୋଳାହଳ ମଧ୍ୟରେ ବକ୍ତା ଓ ଶ୍ରୋତା, ଶାନ୍ତିରେ ନିଜ ନିଜ ଶଙ୍କା ପ୍ରକାଶରେ ଓ ତାହାର ସମାଧାନରେ କିଛି ଅସୁବିଧା ବୋଧ କରିନାହାନ୍ତି । ସମଗ୍ର ଗୀତାର ଉପଦେଶ ଦେବାକୁ ତିନି ଘଣ୍ଟାରୁ ଅଧିକ ସମୟ ଲାଗି ନପାରେ । ତେଣୁ ଗୀତା ଉପଦେଶର କୌଣସି ଅସଙ୍ଗତି ଜଣାପଡୁ ନାହିଁ । ଯୁଦ୍ଧପାଇଁ ବହୁତ

ଆଗରୁ ପ୍ରସ୍ତୁତ, ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଅର୍ଜୁନ କାର୍ଯ୍ୟକାଳରେ ବିଷାଦଗ୍ରସ୍ତ । ଏ ପ୍ରକାର ମାନବିକ ଦୁର୍ବଳତା ଅସ୍ୱଭାବିକ ନୁହେଁ ।

ମହାଭାରତରେ ଅନେକ ସ୍ଥାନରେ ଗୀତାର ଅନୁରୂପ ଉପଦେଶର ବର୍ଣ୍ଣନା ଦେଖାଯାଏ । ଆଦି ପର୍ବର ଆରମ୍ଭରେ ଧୃତରାଷ୍ଟ୍ରଙ୍କର ବିଳାପ ବର୍ଣ୍ଣନା କରାଯାଇଛି । ଧୃତରାଷ୍ଟ୍ର ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ପ୍ରଦର୍ଶନ ସମ୍ବାଦ ଶୁଣି ବିଜୟ ଆଶା ପରିତ୍ୟାଗ କରିବା କଥା ସଞ୍ଜୟଙ୍କୁ ଜଣାଇଛନ୍ତି । ଅନୁଗୀତା ପର୍ବର ଆରମ୍ଭରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି ମୁଁ ସେହି ଯୁଦ୍ଧ ଆରମ୍ଭ ସମୟରେ ଯୋଗଯୁକ୍ତ ହୋଇ ତୁମକୁ ପରମ ଗୁହ୍ୟତତ୍ତ୍ୱର ଉପଦେଶ ଦେଇଅଛି । ନାରାୟଣୀୟ ପ୍ରକରଣରେ ମଧ୍ୟ ଶ୍ରୀମଦଭଗବଦ ଗୀତାର ନାମ ଉଲ୍ଲେଖ କରାଯାଇଅଛି । ଏସବୁ ଅନୁଧ୍ୟାନକଲେ ଜଣାଯିବ ଯେ ଗୀତା ମହାଭାରତରେ ପରେ ପ୍ରକ୍ଷେପ କରାଯାଇଛି, ଏହା ଅଯୌକ୍ତିକ । ବରଂ କୁହାଯାଇପାରେ ଅନୁଗୀତା ଓ ଗୁରୁଶିଷ୍ୟ ସମ୍ବାଦ ପ୍ରକ୍ଷିପ୍ତ ହୋଇପାରେ । ଏହାଛଡା ଭୀଷ୍ମପର୍ବର ଯେଉଁ ସ୍ଥାନରେ ଗୀତାର ସ୍ଥାନ ନିର୍ଦ୍ଦେଶ କରାଯାଇଅଛି ବିଭିନ୍ନ ସ୍ଥାନରୁ ପ୍ରାପ୍ତ ସଂସ୍କରଣରେ ଏହା ସେହି ସ୍ଥାନରେ ସନ୍ନିବିଷ୍ଟ ।

## ଗୀତାର ଉପଦେଶ

ପରବର୍ତ୍ତୀ ସବୁଶ୍ରେଣୀର ଗ୍ରନ୍ଥକାର ଗୀତାକୁ ଶ୍ରଦ୍ଧା ସହିତ ଗ୍ରହଣ କରିଅଛନ୍ତି । ଗୀତା କେବଳ ଦାର୍ଶନିକ ମୀମାଂସାର ଗ୍ରନ୍ଥ ନୁହେଁ । ମନୁଷ୍ୟ କି ପ୍ରକାର ଆଦର୍ଶରେ ଅନୁପ୍ରାଣୀତ ହୋଇ ଜୀବନ ଯାପନକଲେ ଶେଷରେ ଭଗବାନଙ୍କର ସ୍ୱରୂପ ପାଇ ନିରବଚ୍ଛିନ୍ନ ଶାନ୍ତିଭୋଗ କରିପାରିବ, ଗୀତା ତାହାର ପଥ ପ୍ରଦର୍ଶକ । ଅନେକ ଉପନିଷଦ ବଚନ ଗୀତାରେ ଉଦ୍ଧୃତ ହୋଇଅଛି । ଉପନିଷଦ ସହିତ ଶବ୍ଦ ସାଦୃଶ୍ୟ ମଧ୍ୟ ଲକ୍ଷ୍ୟ କରିବାର ବସ୍ତୁ । ଗୀତାରେ ସମସ୍ତ ଆସ୍ତିକ ଦର୍ଶନର ପରସ୍ପର ବିରୋଧୀ ମତବାଦର ଉତ୍କୃଷ୍ଟ ସାମଞ୍ଜସ୍ୟ ଦେଖିବାକୁ ମିଳିବ ।

ଗୀତାରେ ପ୍ରଧାନତଃ ତିନିଗୋଟି ଯୋଗର ଆଲୋଚନା କରାଯାଇଅଛି - କର୍ମ, ଜ୍ଞାନ ଓ ଭକ୍ତି । ଅନ୍ୟାନ୍ୟ ଉପଦେଶମାନ ଏହି ଯୋଗତ୍ରୟର ପରିପୂରକ ଭାବରେ ଦିଆଯାଇଅଛି । ଗୀତା ହେଉଛି 'କର୍ମଯୋଗଶାସ୍ତ୍ର' । ଲୋକମାନ୍ୟ ତିଳକ ଓ ମହାଯୋଗୀ ଅରବିନ୍ଦ ଉଭୟେ ସୁଯୁକ୍ତି ଦ୍ୱାରା ଏହା ପ୍ରତିପାଦନ କରିଅଛନ୍ତି ।



# କର୍ମଯୋଗ

କର୍ମର ଉପଦେଶରେ ଗୀତା ଶତମୁଖ । କର୍ମଯୋଗରେ ଗୀତାର ଆରମ୍ଭ । ବିଷର୍ଣ୍ଣ ଅର୍ଜୁନଙ୍କୁ ସ୍ୱଧର୍ମରେ ଉଦ୍‌ବୁଦ୍ଧ କରି ଯୁଦ୍ଧରେ ଲିପ୍ତ କରାଇବା ହେଉଛି ଗୀତାର କର୍ମ ଉପଦେଶ । କର୍ମ ନ କରି କୌଣସି ପ୍ରାଣୀ ମୁହୂର୍ତ୍ତମାତ୍ର ବଞ୍ଚିନପାରେ । ଜନକ ଆଦି ରାଜର୍ଷି କର୍ମଦ୍ୱାରା ସିଦ୍ଧିଲାଭ କରିଥିଲେ । କର୍ମ କରିବା ମନୁଷ୍ୟର ସ୍ୱଭାବ ସିଦ୍ଧ । କର୍ମାନୁଷ୍ଠାନ ବ୍ୟତୀତ ଶରୀରଯାତ୍ରା ନିର୍ବାହ ହୋଇପାରିବ ନାହିଁ । ତେଣୁ ମନୁଷ୍ୟ ସବୁ ସମୟରେ କର୍ମ କରିବାକୁ ବାଧ୍ୟ । କର୍ମ ନକଲେ ନୈଷ୍କର୍ମ୍ୟରୂପ ତତ୍ତ୍ୱଜ୍ଞାନ ଲାଭ କରାଯାଇ ନ ପାରେ । କର୍ମ ଦ୍ୱାରା ଚିତ୍ତ ଶୁଦ୍ଧିହୁଏ । ଚିତ୍ତଶୁଦ୍ଧି ନ ହେଲେ କେବଳ ସନ୍ନ୍ୟାସ ଅବଲମ୍ବନ ଦ୍ୱାରା ମୁକ୍ତି ହୋଇ ନ ପାରେ । କର୍ତ୍ତବ୍ୟ କର୍ମର ଅନୁଷ୍ଠାନ କରିବାକୁ ହେବ ମାତ୍ର ଏହି ସମୟରେ ଭଲ ବା ମନ୍ଦ କୌଣସି ଫଳ ଆକାଂକ୍ଷା ମନରେ ରହିବ ନାହିଁ । ଏହା ହିଁ ହେଉଛି ପ୍ରକୃତ କର୍ମଯୋଗ । ସମସ୍ତ କର୍ମଫଲ ଈଶ୍ୱରଙ୍କୁ ଅର୍ପଣ କରି ଶାସ୍ତ୍ର ବିଧାନ ଅନୁସାରେ କର୍ତ୍ତବ୍ୟ କର୍ମ ସମ୍ପାଦନ କରାଯିବା ଉଚିତ୍ । ମୁଁ ଯାହା କରୁଛି ତାହା ତାଙ୍କରି ଉଦ୍ଦେଶ୍ୟରେ କରୁଛି, ଏହି ପ୍ରକାର ନିର୍ଭରଶୀଳ ହୋଇ ରହିଲେ କର୍ମ କେବେ ବନ୍ଧନର ହେତୁ ହୋଇପାରିବ ନାହିଁ ବରଂ ଏହା ମୁକ୍ତିର ଅନୁକୂଳତା ସୃଷ୍ଟିକରିବ । କର୍ମ ସନ୍ନ୍ୟାସର ଅର୍ଥ ଅନାସକ୍ତଭାବରେ କର୍ମ କରିଯିବା । ମୁଁ ଯେଉଁ କର୍ମ କରୁଅଛି ତାହାର ଫଳ କଅଣ ହେବ ଏ ଚିନ୍ତା ମନରେ ଆଣିବାର ନୁହେଁ । ପ୍ରଥମେ ଦେଖିବାର କଥା ଯାହା ମୁଁ କରୁଛି ତାହା ମୋର ନିର୍ଦ୍ଧାରିତ କର୍ମ କି ନୁହେଁ । ଏ ବିଷୟରେ ଶାସ୍ତ୍ର କଣ କହୁଛି, କର୍ମ ମୋ ପକ୍ଷରେ ଧର୍ମାନୁକୂଳ କି ନୁହେଁ । ଯଦି ତାହା ହୁଏ ତାହାହେଲେ ଭବିଷ୍ୟତ ଚିନ୍ତା କରିବାର ଆବଶ୍ୟକତା ନାହିଁ । ସୁଖଦୁଃଖ ଲାଭାଲାଭ ଜୟ ପରାଜୟ ସବୁ ସମାନ ମନେକରି କର୍ମରେ ଲିପ୍ତ ହେବା ଆବଶ୍ୟକ । ଏହି ପ୍ରକାର ନିଷ୍କାମ କର୍ମରେ କୌଣସି ପାପର ଆଶଙ୍କା ମଧ୍ୟ ରହିବାର ଅବସର ନଥାଏ । କର୍ତ୍ତୃତ୍ୱ ବୁଦ୍ଧି ନରଖି ଶରୀର ଯାତ୍ରା ମାତ୍ର ନିର୍ବାହ ନିମିତ୍ତ କର୍ମାନୁଷ୍ଠାନ କଲେ ସେ କର୍ମ ବନ୍ଧନର କାରଣ ହୋଇନଥାଏ । ଯେଉଁ ବ୍ୟକ୍ତି ଯଦୃଚ୍ଛାଲାଭେ ସନ୍ତୁଷ୍ଟ, ଶୀତୋଷ୍ଣାଦି ସହନଶୀଳ ଏବଂ ବୈରରହିତ, ହର୍ଷର କାରଣ ଉପସ୍ଥିତ ହେଲେ ଯେ ଅତିମାତ୍ରାରେ ଆନନ୍ଦିତ ହୋଇ ନ ଥାଏ ଓ ବିଷାଦରେ ଯିଏ ଅତିଶୟ ବ୍ୟତିବ୍ୟସ୍ତ ହୋଇ ନପଡ଼େ ତାହାର କୌଣସି କାର୍ଯ୍ୟଦ୍ୱାରା ସେ ନିଜେ ବନ୍ଧନଯୁକ୍ତ ହୋଇପାରେ ନାହିଁ । ସେ ପ୍ରଫୁଲ୍ଲ ଚିତ୍ତରେ କର୍ତ୍ତବ୍ୟ ବୁଦ୍ଧିରେ ନିଜ କର୍ମ ସମ୍ପାଦନ କରିଚାଲେ । ଈଶ୍ୱର ଉପାସନା ବୁଦ୍ଧିରେ ଯେଉଁ ସବୁ କର୍ମ ସଂପାଦନା କରାଯାଏ ସେଗୁଡ଼ିକ ମୁକ୍ତିର ହେତୁ । ନିଷ୍କାମକର୍ମର ଅନୁଷ୍ଠାନ ସମସ୍ତଙ୍କ ପକ୍ଷରେ ସମ୍ଭବପର ନୁହେଁ । ବିଶେଷ କରି ସାତ୍ତ୍ୱିକ ପ୍ରକୃତିର ଲୋକ ପ୍ରାୟ କର୍ମଫଳ ତ୍ୟାଗ କରିପାରେ । କର୍ମ ସନ୍ନ୍ୟାସ ଓ କର୍ମଯୋଗ ଏହି ଦୁଇ ମଧ୍ୟରେ ଗୀତାରେ କର୍ମଯୋଗର ପ୍ରଶସ୍ତି



'ଶିଷ୍ୟସ୍ତେଽହଂ ଶାଧିମାଂ ତ୍ୱାଂ ପ୍ରପନ୍ନମ୍'

କୀର୍ତ୍ତିତ ହୋଇଅଛି । ରାଗଦ୍ୱେଷାଦିମୁକ୍ତ ଯେଉଁ ବ୍ୟକ୍ତି କେବଳ ଈଶ୍ୱରଙ୍କର ତୃପ୍ତି ନିମନ୍ତ କର୍ମରେ ଲିପ୍ତରହେ ସେ କର୍ମୀ ହେଲେ ମଧ ସର୍ବତ୍ୟାଗୀ ସନ୍ୟାସୀ । ଏହାର କାରଣ ଦ୍ୱନ୍ଦଶୂନ୍ୟ ଶୁଦ୍ଧଚିତ୍ତ ବ୍ୟକ୍ତି ସହଜରେ ସଂସାର ବନ୍ଧନରୁ ମୁକ୍ତି ପାଇପାରେ । ସନ୍ୟାସ ଓ କର୍ମଯୋଗ ପୃଥକ ବସ୍ତୁ ନୁହେଁ । ତତ୍ତ୍ୱ ପଣ୍ଡିତମାନେ ଉଭୟକୁ ଏକ ବୋଲି ମନେ କରିଅଛନ୍ତି । କାରଣ ଦୁଇଟି ମଧ୍ୟରୁ ଯେକୌଣସି ଗୋଟିକର ଜଣେ ଉପାସନା କଲେ ଉଭୟର ଫଳ ପାଇବାକୁ ସମର୍ଥ ହୁଏ । କର୍ମ ତ୍ୟାଗ କଲେ କେହି ଯୋଗୀ ହୋଇଯାଏ ନାହିଁ । କର୍ମଫଳ ପ୍ରତି ଲକ୍ଷ୍ୟ ନ ରଖି କର୍ମ ଅନୁଷ୍ଠାନ କରିଚାଲିଲେ ଯଥାର୍ଥ ସନ୍ୟାସ ବା ଯୋଗ ସଂପନ୍ନ ହୁଏ । ଯେଉଁ ଯୋଗୀ ଜ୍ଞାନ ଯୋଗରେ ଉନ୍ନୀତ ହେବାକୁ ଇଚ୍ଛାକରେ ତାକୁ ସର୍ବପ୍ରଥମେ ନିଷ୍କାମ ଭାବରେ କର୍ମର ଉପାସନା କରିବାକୁ ହେବ । ଜ୍ଞାନଯୋଗରେ ପ୍ରତିଷ୍ଠା ଲାଭ ନିମିତ୍ତ ଚିତ୍ତ ବିକ୍ଷେପକ କର୍ମ ସମୂହ ସଂପୂର୍ଣ୍ଣଭାବେ ବର୍ଜନ କରିବାକୁ ହେବ । ଇନ୍ଦ୍ରିୟଭୋଗ୍ୟ ରୂପ, ରସ, ଗନ୍ଧ, ସ୍ପର୍ଶ ଆଦି ଓ ସେମାନଙ୍କର ଅନୁକୂଳ କର୍ମରେ ଯିଏ ପ୍ରବୃତ୍ତ ହୁଏନାହିଁ ତାହାର କର୍ମଯୋଗ ହିଁ ନିର୍ମଳ ଓ ପରିଶୁଦ୍ଧ । କର୍ମ ଅନୁଷ୍ଠାନ ନିମିତ୍ତ ଶରୀରକୁ ପୀଡ଼ା ଦେବା ଅତ୍ୟନ୍ତ ଗର୍ହିତ । ଉପବାସ ଆଦି ଯେ କର୍ମାନୁଷ୍ଠାନର ଆବଶ୍ୟକ ଅଙ୍ଗ ଏହା ମଧ ଠିକ ନୁହେଁ । କର୍ମର ପ୍ରଧାନ ଉଦ୍ଦେଶ୍ୟ ଚିତ୍ତଶୁଦ୍ଧି । ମନ ଇନ୍ଦ୍ରିୟ ଆଦି ଯାହାଦ୍ୱାରା ଉଚ୍ଛୃଙ୍ଖଳ ହୁଅନ୍ତି ନାହିଁ ସେହି ଭାବରେ ବିଷୟ ଉପଭୋଗ ନିନ୍ଦନୀୟ ନୁହେଁ । ଇନ୍ଦ୍ରିୟମାନଙ୍କୁ ସଂଯତ ନ କରି ବିରୋଧ କରିବାର ଚେଷ୍ଟା ଏକବାରେ ବୃଥା । ଏହାଦ୍ୱାରା ବିପରୀତ ଫଳ ଫଳିଥାଏ । ଜୋର କରି ଉପବାସ ପ୍ରଭୃତି କୃଚ୍ଛାଚାର ଦ୍ୱାରା ଯେଉଁମାନେ ପ୍ରକୃତିକୁ ନିଗ୍ରହ କରିଥାଆନ୍ତି ସେମାନଙ୍କୁ ଗୀତାରେ ଆସୁରନିଶ୍ଚୟ ବୋଲି ବର୍ଣ୍ଣନା କରାଯାଇଅଛି । ଏ ପ୍ରକାରର ଉତ୍କଟ ଇନ୍ଦ୍ରିୟ ନିଗ୍ରହ ଗୀତାରେ ନିନ୍ଦିତ । ଆହାର ବିହାର ପ୍ରଭୃତି ଶରୀର ବ୍ୟାପାରରେ ନିୟମ ଓ ସଂଯମଭାବ, ଯୋଗୀ ପକ୍ଷେ ଅବଲମ୍ବନୀୟ । ଏହି ଭାବ ସୂଚାରୁ ରୂପେ ସମ୍ପାଦନ କରିବାକୁ ଗୀତାରେ ଉପଦେଶ ଦିଆଯାଇଅଛି । ଫଳରେ ଅନାସକ୍ତ ହୋଇ ଯେଉଁ କର୍ମ କରାଯାଇଥାଏ ତାହା ଯେଉଁ ପ୍ରକାର କର୍ମ ହେଉ ପଛକେ ତାହା ସାତ୍ତ୍ୱିକ । କର୍ମକ୍ଷୟର କାରଣ ଅଟେ ସାତ୍ତ୍ୱିକ କର୍ମ । ନବମ ଅଧ୍ୟାୟରେ ଭଗବାନ କହିଅଛନ୍ତି, ହେ କୌନ୍ତେୟ ତୁମେ ଯାହାକିଛି କରୁଛ ଯେକୌଣସି ଦ୍ରବ୍ୟ ଆହାର କରୁଛ, ଯେ କୌଣସି ଅନୁଷ୍ଠାନ କରୁଛ, ଯାହାକିଛି ଦାନ କରୁଛ, ଯାହାକିଛି ତପସ୍ୟା କରୁଅଛ, ସେ ସବୁ ମୋତେ ସମର୍ପଣ କର । ଏହିପରି କରିପାରିଲେ କର୍ମଜନିତ ଇଷ୍ଟ ଅନିଷ୍ଟ ଫଳରୁ ତୁମେ ମୁକ୍ତ ହେବ । ତୁମର ସଂସାର ବନ୍ଧନର କାରଣ ଏହି କର୍ମ ହେବନାହିଁ । ତୁମେ ଯୁକ୍ତାତ୍ମା ହୋଇ ମୋତେ ଲାଭକରିବ । (ଯଦ କରୋଷି ଯଦ ସ୍ନାସି ଯ ଜୁହୋଷି ଦଦାସି, ଯତ ଯଦପଶ୍ୟସି କୌନ୍ତେୟ ତତ୍ କୁରୁଷ ସମର୍ପଣମ୍) । ଗୀତାର ଉପସଂହାରରେ ଭଗବାନ କହିଅଛନ୍ତି - ମୋ ଠାରେ ଚିତ୍ତ ଅର୍ପଣ କଲେ, ମୋର ଆଶୀର୍ବାଦରୁ ଲାଭ କରିଥିବା ଜ୍ଞାନ ଦ୍ୱାରା ମୋତେ ପ୍ରାପ୍ତ ହୋଇ ପାରିବ । ମୋର ଶରଣାପନ୍ନ ହେଲେ ମୁଁ ତୁମକୁ ସକଳ ପାପରୁ ମୁକ୍ତ କରିବି ।

●

# ଜ୍ଞାନଯୋଗ

ସାତ୍ତ୍ୱିକ କର୍ମଯୋଗର ବିଶୁଦ୍ଧିଫଳରେ ଜ୍ଞାନଯୋଗର ଉତ୍ପତ୍ତି ହୁଏ । ଷଷ୍ଠ ଅଧ୍ୟାୟରେ ପ୍ରଥମରୁ ଏହା କୁହାଯାଇଛି । ଜ୍ଞାନଯୋଗର ପରିଣତି ହୁଏ ଆତ୍ମଜ୍ଞାନରେ । ବିଷନ୍ନ ଅର୍ଜୁନଙ୍କୁ ଭଗବାନ ଶ୍ରୀକୃଷ୍ଣ ସାଂଖ୍ୟଯୋଗର ଉପଦେଶ ସ୍ୱରୂପ ଆତ୍ମତତ୍ତ୍ୱର ଉପଦେଶ ଦେଇଅଛନ୍ତି । ଜୀବାତ୍ମା ନିତ୍ୟ । ଏହି ଉପଦେଶରେ ସେ କହିଛନ୍ତି ଆତ୍ମା ଶସ୍ତ୍ର ଦ୍ୱାରା ଛିନ୍ନ ହୁଏନାହିଁ, ଅଗ୍ନି ତାକୁ ଦଗ୍ଧ କରିପାରେ ନାହିଁ, ଜଳରେ ତାହା ଓଦା ହୋଇ ନଥାଏ, ମାରୁତ ତାକୁ ଶୋଷଣ କରି ପାରିନଥାଏ । ଆତ୍ମା ଅବ୍ୟକ୍ତ ଅଚିନ୍ତ୍ୟ ଓ ଅବିକାର୍ଯ୍ୟ (ବିକାର ବର୍ଜିତ) । ତାହା ଜନ୍ମ ଓ ମୃତ୍ୟୁର ଅତୀତ । ଶରୀରର ବିନାଶରେ ତାହାର ବିନାଶ ହୁଏ ନାହିଁ । ଆତ୍ମାର ଏହି ସ୍ୱରୂପ ଜାଣିପାରିଲେ ମନୁଷ୍ୟର ଶୋକର କୌଣସି କାରଣ ରହେ ନାହିଁ । ଆତ୍ମାକୁ ଜାଣିଲେ ସାଧକ ବିଶ୍ୱକୁ ଜାଣିପାରେ । ସେହି ହେତୁରୁ ଆତ୍ମଜ୍ଞାନ ଉଦ୍ଦେଶ୍ୟରେ ସାଧନା, ଜ୍ଞାନଯୋଗର ପ୍ରାଥମିକ ସୋପାନ । ଆତ୍ମଜ୍ଞାନ ଲାଭ କରିପାରିଲେ ଯୋଗୀ ଶାନ୍ତ, ବିମତ୍ସର, ଯଦୃଚ୍ଛାଲାଭ ସନ୍ତୁଷ୍ଟ, ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ରହିତ ଏବଂ ସମଚିତ୍ତ ହୋଇଥାଏ । ଜ୍ଞାନଯୋଗ ଫଳରେ ସାଧକ ଏହି ପ୍ରକାର ପ୍ରତିଷ୍ଠିତ ହେଲେ ଜ୍ଞାନଯଜ୍ଞର ଅଧିକାର ଲାଭ କରେ । ଦ୍ରବ୍ୟମୟ ଦୈବଯଜ୍ଞାଦି ଅପେକ୍ଷା ଜ୍ଞାନଯଜ୍ଞ ଶ୍ରେଷ୍ଠ, କାରଣ ସବୁ ପ୍ରକାର ଯଜ୍ଞର ଚରମ ଲକ୍ଷ୍ୟ - ଜ୍ଞାନ । ତତ୍ତ୍ୱଜ୍ଞାନ ସବୁ ଜ୍ଞାନର ଅନ୍ତର୍ଭାବ । ଜ୍ଞାନଯୋଗରେ ପ୍ରତିଷ୍ଠିତ ହେବା ସକାଶେ କର୍ମଯୋଗ ହିଁ କାରଣ । ଆତ୍ମଜ୍ଞାନ ଲାଭ ନିମିତ୍ତ ଗୁରୁଙ୍କର ଆଶୀର୍ବାଦ ଆବଶ୍ୟକ । ଶ୍ରଦ୍ଧା, ଗୁରୁଭକ୍ତି, ଜିଜ୍ଞାସା ଏବଂ ଗୁରୁ ଶୁଶ୍ରୁଷା ବ୍ୟତୀତ ତତ୍ତ୍ୱଜ୍ଞାନ ଲାଭ ହୋଇପାରେ ନାହିଁ । ଏଥି ନିମିତ୍ତ ଭଗବାନ ନିଜ ପ୍ରିୟ ଶିଷ୍ୟ ଅର୍ଜୁନଙ୍କୁ ଗୁରୁ ଶୁଶ୍ରୁଷାର ଉପଦେଶ ଦେଇ ଅଛନ୍ତି । ସର୍ବତୋଭାବେ ଶ୍ରୀକୃଷ୍ଣଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଅର୍ଜୁନ ମଧ ତାଙ୍କର ପାଦତଳେ ପ୍ରପନ୍ନ ହୋଇ ଭକ୍ତଜନ ବାଞ୍ଛିତ ପରମ ଜ୍ଞାନ ଲାଭ କରିଅଛନ୍ତି । ତତ୍ତ୍ୱଜ୍ଞାନ ପାଇଲା ପରେ ମନୁଷ୍ୟ ସବୁ ପ୍ରକାର ମୋହରୁ ବିମୁକ୍ତ ହୋଇଥାଏ । ସେ ସମସ୍ତ ଜଗତରେ ନିଜ ଆତ୍ମାର କେବଳ ପରିପ୍ରକାଶ ଦେଖେ । ଶେଷରେ ସକଳ ବସ୍ତୁରେ ପରମାତ୍ମାଙ୍କ ସହିତ ଅଭେଦ ଜ୍ଞାନ ଜାଣି କୃତାର୍ଥ ହୁଏ । ପ୍ରଜ୍ୱଳିତ ଅଗ୍ନି ଯେପରି କାଷ୍ଠଖଣ୍ଡମାନଙ୍କୁ ଭସ୍ମରେ ପରିଣତ କରେ, ଜ୍ଞାନରୂପ ଅଗ୍ନି ସେହିପରି ସକଳ କର୍ମକୁ ଭସ୍ମ କରିଥାଏ । ଅର୍ଥାତ୍ ପ୍ରାରବ୍ଧ କର୍ମଫଳ ବ୍ୟତୀତ ଅପର କୌଣସି କୃତକର୍ମ ଜ୍ଞାନୀ ନିକଟରେ ସୁଖ ବା ଦୁଃଖର ଭୋଗ ରୂପକ ଫଳ ଉପସ୍ଥିତ କରିପାରେ ନାହିଁ । ତପସ୍ୟାର ବଳ ହେଉ ବା ଯାଗଯଜ୍ଞର ବଳ ହେଉ ଏଥିରୁ କେହି ଜ୍ଞାନ ଯଜ୍ଞପରି ଚିତ୍ତ ଶୁଦ୍ଧିକରିପାରେ ନାହିଁ । ବହୁକାଳ କର୍ମଯୋଗ ଅନୁଷ୍ଠାନ କରି ଚିତ୍ତ ବିଶୁଦ୍ଧ ହେଲେ ଆତ୍ମଜ୍ଞାନ ସହଜରେ ଲାଭ କରିହୁଏ । ନିଷ୍କାମ କର୍ମଯୋଗ ଏକପ୍ରକାର ଭକ୍ତିଯୋଗ ପରି । ତାହାର ଅନୁଷ୍ଠାନ ବ୍ୟତୀତ ତତ୍ତ୍ୱଜ୍ଞାନ ଲାଭ ହୋଇ ନଥାଏ । ଶ୍ରଦ୍ଧାବାନ୍ ବ୍ୟକ୍ତି

ଗୁରୁଙ୍କର ଉପଦେଶ ଅନୁସାରେ ନିଷ୍ଠାର ସହିତ ସାଧନା କରିଲେ ତତ୍ତ୍ୱଜ୍ଞାନ ଲାଭରେ ସମର୍ଥ ହୁଏ । ତତ୍ତ୍ୱଜ୍ଞାନୀ ଜ୍ଞାନଲାଭ ପରେ ଅଚିରେ ମୋକ୍ଷ ଲାଭ କରିଥାଏ ।

ଏହିପରି କେତେଗୋଟି ବାକ୍ୟରେ ଜ୍ଞାନଯୋଗର ଅଧିକାରୀର ସଂଜ୍ଞା ନିର୍ଣ୍ଣୟ କରାଯାଇ ଅଛି । ମାତ୍ର ଯେଉଁ ବ୍ୟକ୍ତି ଆଚାର୍ଯ୍ୟଙ୍କ ଉପଦେଶ ଶୁଣେ ନାହିଁ ଏବଂ କୌଣସି ପ୍ରକାରରେ ସେ ବିଷୟରେ ଜ୍ଞାନ ଜନ୍ମିଲେ ମଧ ସେଥିରେ ଶ୍ରଦ୍ଧାହୀନ ହୁଏ ଓ କୌଣସି ଉପାୟରେ ଦୈବାତ ଶ୍ରଦ୍ଧା ଆସିଗଲେ ମଧ ସଂଶୟଚିତ୍ତ ହୁଏ ସେ ଆପଣାର ପ୍ରାପ୍ତବ୍ୟ ଲକ୍ଷ୍ୟରୁ ଭ୍ରଷ୍ଟ ହୁଏ । ସଂଶୟାପନ୍ନ ପକ୍ଷରେ ଇହଲୋକ ପରି ପରଲୋକ ମଧ ଅନ୍ଧକାରାଚ୍ଛନ୍ନ ରହେ । ଦେହ ଆଦିରେ ଯାହାର ଆତ୍ମବୁଦ୍ଧି ବିନଷ୍ଟ ହୋଇଅଛି ଏହିପରି ତତ୍ତ୍ୱଜ୍ଞ ସାଧୁ ପୁରୁଷ, ଲୋକଶିକ୍ଷା ଉଦ୍ଦେଶ୍ୟରେ ବା ଦେହ ଧାରଣ ପାଇଁ ଯେଉଁ ସକଳ ଶରୀର କର୍ମ କରିଥାଆନ୍ତି ସେ ସବୁ କର୍ମ ତାଙ୍କର ଜ୍ଞାନରେ ପ୍ରତିବନ୍ଧକ ସୃଷ୍ଟି କରି ନଥାଏ । ପରବର୍ତ୍ତୀ ପ୍ରାୟ ପ୍ରତ୍ୟେକ ଅଧ୍ୟାୟରେ ଜ୍ଞାନ ଯୋଗର ଅଳ୍ପ ବହୁତ ଆଲୋଚନା କରାଯାଇଛି । କେହି କେହି ଭାଷ୍ୟକାର କହନ୍ତି ଜ୍ଞାନ କେବଳ ମୁକ୍ତିର କାରଣ । ଆଉ କେହି ଭାଷ୍ୟକାର ଭକ୍ତିକୁ ସହକାରୀ କାରଣ ବୋଲି ସ୍ୱୀକାର କରିଅଛନ୍ତି । ପ୍ରଥମତଃ ଗୁରୁଙ୍କର ଉପଦେଶ ଏବଂ ତାପରେ ଭଗବାନଙ୍କଠାରେ ଏକାନ୍ତ ନିର୍ଭରଶୀଳ ନ ହେଲେ ଯେଉଁଠି ମୁକ୍ତିଲାଭ ଅସମ୍ଭବ ସେଠାରେ ଭକ୍ତିକୁ ବାଦ ଦିଆଯାଇ ପାରେ କି ନା ତାହା ବିଚାର କରିବାର କଥା । କିନ୍ତୁ ନିଷ୍କାମ କର୍ମଯୋଗ ଯେ ଜ୍ଞାନ ଲାଭର ଏକମାତ୍ର ଉପାୟ ତାହା ଗୀତାରେ ସ୍ପଷ୍ଟ କରି କୁହାଯାଇଛି । ଜ୍ଞାନ ପରି ଚିତ୍ତ ଶୁଦ୍ଧିକର ଆଉ କିଛି ନାହିଁ ।



''ରାମ ନାମ ସତ୍ୟ ହେ, ଔର ସବ୍‌କୁଛ୍ ଝୁଟ ହେ'' ଏକଥା କାହିଁକି କହନ୍ତି ?

ବାବା-ଯିଏ ରହିଲେ ତାଙ୍କରି ପାଇଁ କହନ୍ତି ଚେତେଇ ଦିଅନ୍ତି, ପ୍ରମାଣ ଦେଖେଇ ଦିଅନ୍ତି - ଏ ବି ତମରି ପରି ଗର୍ବ, ଦମ୍ଭ, ଅଭିମାନରେ ବୁଲୁଥିଲା । ଆଜି ଖାଲି ହାତରେ ଯାଉଛି ସବୁ ଛାଡି ଦେଇ, ଏଣୁ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି-

ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ମୂଢ଼ମତେ<br>
ସମ୍ପ୍ରାପ୍ତେ ସଂନିହିତେ ମରଣେ ନହି ନହି ରକ୍ଷତି ଡୁକୃଞ୍ କରଣେ

ପୃଥିବୀରେ ଯାହା ଧ୍ରୁବ ସତ୍ୟ ଯାହାକି ଅଜର, ଅମର ଓ ଚିରନ୍ତନ, ସେଇ ଭଗବତ ନାମ ସତ୍ୟ ବୋଲି ପୃଥିବୀର ଲୋକମାନଙ୍କୁ ଜଣାଇ ଦିଅନ୍ତି ।

''ଜାତସ୍ୟ ହି ଧ୍ରୁବଂ ମୃତ୍ୟୁ''

ମୁଁ ମରିବି ଏ ଧାରଣା କାହାର ଅଛି ? କାହାରି ନାହିଁ ।

ବାଯାବାଣୀ....

# ଭକ୍ତିଯୋଗ

ନିଷ୍କାମ କର୍ମଦ୍ୱାରା ବିଶୁଦ୍ଧିକୃତ ଚିତ୍ତରେ ଆତ୍ମତତ୍ତ୍ୱ ପ୍ରତିଷ୍ଠିତ ହେଲେ, ଭକ୍ତି ସେଠାରେ ଆପେ ଆପେ ବସାବାନ୍ଧି ରହେ । କେବଳ ଜ୍ଞାନ ଯୋଗର ଉପାସନାରେ ଯାହାର ଜୀବନ ଅତିବାହିତ ହୁଏ ସେ ଏକ ଅନିର୍ବଚନୀୟ ଅପାର୍ଥିବ ରସ ଆସ୍ୱାଦନରୁ ବଞ୍ଚିତ ହୁଏ । ଭଗବାନ୍ କହିଅଛନ୍ତି ଯେଉଁମାନେ ମୋତେ ଏକାଗ୍ରଚିତ୍ତ ଏବଂ ପରମ ଶ୍ରଦ୍ଧାନ୍ୱିତ ହୋଇ ଉପାସନା କରନ୍ତି ସେ ସମସ୍ତ ଭକ୍ତମାନଙ୍କୁ ମୁଁ ଜରାମରଣ କ୍ଲିଷ୍ଟ ସଂସାରରୁ ଉଦ୍ଧାର କରିଥାଏ । କାରଣ ସେମାନେ ମୋଠାରେ ଯୁକ୍ତ ଓ ମତ୍ ପରାୟଣ ହୋଇ ଅନନ୍ୟ ଭକ୍ତି ଯୋଗରେ ମୋର ଉପାସନା କରିଥାଆନ୍ତି । ଯେଉଁମାନେ ନିୟତ ସନ୍ତୁଷ୍ଟ, ପ୍ରମାଦ ଶୂନ୍ୟ, ସଂଯତ ସ୍ୱଭାବ ଓ ମୋ ବିଷୟରେ ଦୃଢ଼ ନିଶ୍ଚିତ, ଯେଉଁମାନେ ମୋଠାରେ ମନ ଓ ବୁଦ୍ଧି ସମର୍ପଣ କରିଅଛନ୍ତି ସେହି ଭକ୍ତମାନେ ମୋର ଅତୀବ ପ୍ରିୟ । ଯେଉଁ ବ୍ୟକ୍ତି ନିସ୍ପୃହ, ନିରପେକ୍ଷ, ଶୁଚି ଦକ୍ଷ ଓ ଅପକ୍ଷପାତୀ, ଯାହାର ମନରେ କେତେବେଳେ ବ୍ୟଥା ଆସି ନଥାଏ ଯେ ସର୍ବାରମ୍ଭ ପରିତ୍ୟାଗୀ, ସେହି ଭକ୍ତ ମୋର ପ୍ରିୟ । ଯେ ପ୍ରିୟ ଲାଭରେ ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି ନାହିଁ, ଅପ୍ରିୟ ଘଟିଲେ ମଧ ଦ୍ୱେଷ କରି ନଥାନ୍ତି; ଯାହାର ଶୋକ ନାହିଁ ଆକାଙ୍କ୍ଷା ନାହିଁ, ପାପ ଓ ପୁଣ୍ୟର ଯେ ଅତୀତ ସେହି ପ୍ରକାର ଭକ୍ତ ମୋର ପରମ ପ୍ରିୟ ପାତ୍ର । ନିନ୍ଦା ଓ ସ୍ତୁତି ଯାହା ନିକଟରେ ସମାନ, ଯେ ସଂଯତବାକ, ଯଦୃଚ୍ଛାଲବ୍ଧ ବସ୍ତୁରେ ଯେ ସନ୍ତୁଷ୍ଟ, ସେହି ସ୍ଥିରବୁଦ୍ଧି ଭକ୍ତ ମୋର ପ୍ରିୟ ପାତ୍ର । ଯେଉଁ ସବୁ ଭକ୍ତମାନେ ଏହି ପ୍ରକାର ସାଧନ ବ୍ରତରେ ନିଯୁକ୍ତ, ଶ୍ରଦ୍ଧାଳୁ ଓ ମୋଠାରେ ଏକ ଚିତ୍ତ, ସେହିମାନେ ମୋର ଅତିଶୟ ପ୍ରିୟ । ଗୀତାର ଉପସଂହାରରେ ଭଗବାନ୍ ଶୁଣାଇ ଅଛନ୍ତି ଯେଉଁ ବ୍ୟକ୍ତି ଶୁଦ୍ଧ ପ୍ରଜ୍ଞାରେ ଉଦଭାସିତ ସେ ବ୍ରହ୍ମରେ ଅବସ୍ଥିତ ଓ ପ୍ରସନ୍ନଚିତ୍ତ ହୋଇ ଶୋକ କରେ ନାହିଁ ଓ ନିଜେ କୌଣସି ବସ୍ତୁର ଆକାଙ୍କ୍ଷା ମଧ କରେ ନାହିଁ । ଏହି ପ୍ରକାରର ସମଦର୍ଶୀ ପୁରୁଷ ସର୍ବଭୂତରେ ମୋର ସ୍ଥିତି ଅନୁଭବ କରିଥାଏ । ଏହା ହିଁ ପରାଭକ୍ତି । ଭକ୍ତ ସେହି ପରାଭକ୍ତି ପ୍ରଭାବରୁ ମୋର ସଚ୍ଚିଦାନନ୍ଦ ସ୍ୱରୂପ ଏବଂ ସର୍ବବ୍ୟାପିତ୍ୱ ତତ୍ତ୍ୱତଃ ଜାଣିବାକୁ ସମର୍ଥ ହୁଏ । ଶେଷରେ ସେହି ଭକ୍ତ ମୋ ଠାରେ ପ୍ରବେଶ କରେ ।

ଭକ୍ତି ଭାବରେ କେବଳ ସେହି ସଚ୍ଚିଦାନନ୍ଦଙ୍କୁ ଆଶ୍ରୟ କରିବା ବ୍ୟତୀତ ଜୀବନର ଅନ୍ୟ ଗତି ନଥିବା କଥା ଭଗବାନ ଅର୍ଜୁନଙ୍କୁ କହିଅଛନ୍ତି । 'ମୋତେ ଆଶ୍ରୟ କରି ଯିଏ ସମସ୍ତ କାର୍ଯ୍ୟ ସଂପାଦନ କରେ ମୋର ଅନୁଗ୍ରହରୁ ସେ ଶାଶ୍ୱତ ଅବ୍ୟୟ ପଦ ଲାଭ କରିପାରେ । ଅତଏବ ଅର୍ଜୁନ, ତୁମେ ମନଦ୍ୱାରା ସମସ୍ତ କର୍ମ ମୋତେ ଅର୍ପଣ କରି ମତ୍‌ପରାୟଣ ହୋଇ ଯୋଗ ଆଶ୍ରୟ ପୂର୍ବକ ସତତଚିତ୍ତ ହୁଅ । ଏକାଗ୍ର ଚିତ୍ତରେ ଭଗବାନଙ୍କୁ ଆତ୍ମସମର୍ପଣ ବ୍ୟତୀତ କୌଣସି ସାଧନାରେ ସିଦ୍ଧିଲାଭ

ମିଳିପାରେ ନାହିଁ । ଏହା ଭଗବାନଙ୍କର ଉପଦେଶ । ସେ ଅର୍ଜୁନଙ୍କୁ କହୁଅଛନ୍ତି ହେ ଭାରତ, ତୁମେ ସର୍ବତୋଭାବରେ ସର୍ବଭୂତର ଅନ୍ତର୍ଯ୍ୟାମୀଙ୍କର ଶରଣାପନ୍ନ ହୁଅ । ତାଙ୍କର ପ୍ରସାଦରୁ ପରାଶାନ୍ତି ଓ ଶାଶ୍ୱତ ସ୍ଥାନ ପ୍ରାପ୍ତ ହେବ । ଯେଉଁମାନେ ନିୟତ ଭଗବାନଙ୍କର ଭଜନ କରୁଅଛନ୍ତି ସେମାନେ ଭଗବାନଙ୍କ ପ୍ରସାଦରୁ ବିମଳ ବୁଦ୍ଧି ଲାଭ କରନ୍ତି । ସେହି ବୁଦ୍ଧି ସହାୟତାରେ ଭଗବାନ ସେମାନଙ୍କ ନିକଟରେ ପ୍ରକାଶିତ ହୁଅନ୍ତି । ଭଜନ ଫଳରେ ଆତ୍ମାର ଶୁଭ ବୁଦ୍ଧି ଉତ୍ପନ୍ନ ହୁଏ । ଏହା ହିଁ ଆମର ଗାୟତ୍ରୀ ମନ୍ତ୍ରର ଅର୍ଥ । ଯେ ଆମ୍ଭମାନଙ୍କୁ ଶୁଭ ବୁଦ୍ଧିର ପ୍ରେରଣା ଦେଉଅଛନ୍ତି ତାଙ୍କର ଭଜନ କରିବା ଗାୟତ୍ରୀ ମନ୍ତ୍ରର ତାତ୍ପର୍ଯ୍ୟ ।

ଗୀତାରେ ଭକ୍ତିଯୋଗର ଆଲୋଚନା ଦ୍ୱାରା ଦେଖାଯାଏ ଯେ ଯୋଗତ୍ରୟ ମଧ୍ୟରେ ଭକ୍ତିଯୋଗକୁ ଚରମ ବୋଲି ସିଦ୍ଧାନ୍ତ କରାଯାଇଅଛି । ଜ୍ଞାନ ପରେ ଶ୍ରଦ୍ଧା ବା ପରାଭକ୍ତି ଏବଂ ତାହାର ଚରମ ଉପାଦେୟ ପରମେଶ୍ୱର । ତେଣୁ ଦେଖାଯାଉଛି ଯେ କେବଳ ଜ୍ଞାନଦ୍ୱାରା ଈଶ୍ୱରାନୁଭୂତିର ସିଦ୍ଧାନ୍ତ ଗୀତାର ଅଭିପ୍ରେତ ନୁହେଁ । 'ଭକ୍ତି ଛଡ଼ା ମୁକ୍ତି ନାହିଁ' ଗୀତାର ଏହା ହିଁ ଗୀତି ।



ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କ ନିମନ୍ତ୍ରଣରେ ହସ୍ତିନାକୁ ଯାଇଥାଆନ୍ତି । ରନ୍ଧା ବଢ଼ାର ବହୁତ ଆୟୋଜନ ହୋଇଥାଏ । ଦୁର୍ଯ୍ୟୋଧନ ଭାରତର ସମ୍ରାଟ । ତାଙ୍କର ବା ଅଭାବ କ'ଣ ? ପୁଝାରୀ, ଚାକର ସମସ୍ତେ ଲାଗିଥାଆନ୍ତି । ଦୁର୍ଯ୍ୟୋଧନ ସଭାରେ କୃଷ୍ଣଙ୍କୁ କ'ଣ ଟିକେ ଅପମାନ ଦେଇଦେଲା । ସେଇଠୁ ଉଠି କୃଷ୍ଣ ଚାଲିଲେ । ଦିନ ପ୍ରାୟ ୧୨ଟା ହେବ । ଭୀଷଣ ଖରା - ବିଦୂର ଘରେ ଯାଇ ପହଞ୍ଚିଲେ । ବିଦୂର ସଭାରେ ଥାଆନ୍ତି । ବିଦୂରଙ୍କ ସ୍ତ୍ରୀକୁ ଡାକିଲେ । ସେ ଗାଧୋଉଥିଲା, ଭାବିଲା ଏ'ତ କୃଷ୍ଣଙ୍କ ଡାକ । ଆତ୍ମହରା ହୋଇ ଦଉଡି ଆସିଲା । ତା' ଦେହରେ ଶାଢ଼ୀ ନଥାଏ । କୃଷ୍ଣ ତାଙ୍କ ଉତ୍ତରୀଟିକୁ ତା ଉପରେ ପକାଇ ଦେଲେ । ବସିପଡ଼ି କହିଲେ - ଭାରି ଭୋକ । ବିଦୂରଙ୍କ ସ୍ତ୍ରୀ ଘରକୁ ପଶିଗଲା । ଦେଖିଲା ଗୋଟିଏ ପାକଲା କଦଳୀ କାନ୍ଧି ଥୁଆ ହୋଇଛି । ସେଇଟିକୁ ପିଣ୍ଡାକୁ ନେଇଆସିଲା । ଚୋପା ଛଡାଉଥାଏ, କୃଷ୍ଣଙ୍କୁ ଦେଉଥାଏ । କୃଷ୍ଣ ମଧ୍ୟ ଖାଇଚାଲିଥାନ୍ତି । ଏହି ସମୟରେ ବିଦୂର କୃଷ୍ଣଙ୍କୁ ଖୋଜି ଖୋଜି ଆସି ଘରେ ପହଞ୍ଚିଲେ । ଦେଖିଲେ ପାକଲା କଦଳୀଗୁଡାକ ତଳେ ଗଦା ହୋଇଛି । କଦଳୀ ଚୋପା ତାଙ୍କୁ ଦିଶୁନାହିଁ । ତାଙ୍କ ସ୍ତ୍ରୀ ଏଣେ କଦଳୀ ଛଡାଇ କରି ଚୋପା ଗୁଡିକ କୃଷ୍ଣଙ୍କୁ ଖାଇବାକୁ ଦେଉଛି ଓ କଦଳି ଗୁଡିକ ତଳେ ପକାଇ ଦେଉଛି । ସ୍ତ୍ରୀକୁ ବହୁତ ଗାଳିଦେଲେ । କୃଷ୍ଣ କିଛି ନଜାଣିଲା ଭଳି ହସିଦେଲେ । ଭକ୍ତର ଭାବ ଏହିଭଳି ସେଥିପାଇଁ ଭଗବାନ କହିଛନ୍ତି ।

''ଭକତ ଅଟଇ ମୋହର ସମ୍ବଳ ଭକ୍ତ ଅଟେ ମୋର ଜୀବ ଜୀବନ ।
ଭକ୍ତ ଦେଲେ ବିଷ କରଇ ମୁଁ ପାନ, ଅଭକ୍ତର ସୁଧା ନକରେ ଗ୍ରହଣ ।''

*ବାଯାବାଣୀ....*

# ଗୀତାର ଦାର୍ଶନିକ ତତ୍ତ୍ୱ

ଗୀତାରେ ଜୀବ ଓ ବ୍ରହ୍ମର ଅଭେଦବାଚକ କେତୋଟି ବଚନ ଅଛି । ଯଥା ବସୁଦେବ ସର୍ବମ, ଇତ୍ୟାଦି । କିନ୍ତୁ ବିଭିନ୍ନ ଭାଷ୍ୟକାରମାନଙ୍କର ବିରୁଦ୍ଧ ମତମାନଙ୍କୁ ବିଚାର ନ କରି ଦେଖିଲେ ଜଣାଯିବ ଗୀତାରେ ଦ୍ୱୈତବାଦ ପ୍ରଚାର କରାଯାଇଛି । ଅବଶ୍ୟ କେହି କେହି କହିବେ ଏହା ଅଦ୍ୱୈତଗର୍ଭ ଦ୍ୱୈତବାଦ । ଜୀବାତ୍ମା ନିଷ୍କାମ କର୍ମଦ୍ୱାରା ଜ୍ଞାନଯୋଗକୁ ଉନ୍ନୀତ ହୁଏ । ଏହା ପରେ ଭକ୍ତିର ପ୍ରଭାବରେ ଏପରି ଏକ ସ୍ଥାନରେ ପହଞ୍ଚେ ଯେଉଁଠାରେ ତାର ନିଜର କୌଣସି କାମନା ଆଉ ରହେ ନାହିଁ । ଈଶ୍ୱରୀୟ ଇଚ୍ଛା ସହିତ ତାର ନିଜର ଇଚ୍ଛା ସେତେବେଳ ସଂପୂର୍ଣ୍ଣଭାବରେ ମିଶିଯାଏ । ସେହି ଈଶ୍ୱରଙ୍କ ଆଦେଶ ନିର୍ଦ୍ଦେଶରେ ସେ ନିଜର କର୍ମ କରିଯାଏ । ଏହି ପ୍ରକାର ଅଦ୍ୱୈତଗର୍ଭାତ୍ମକ ଦ୍ୱୈତବାଦ ଜୀବାତ୍ମାର ଚରମ ଉନ୍ନତି ।

ମାତ୍ର ଏହା ବାଦ ଅନ୍ୟ ବହୁତ ଜାଗାରେ ଦ୍ୱୈତବାଦ ସ୍ପଷ୍ଟ କରାଯାଇଅଛି । ପ୍ରଥମେ ନମସ୍କାର ଶ୍ଳୋକ ଦେଖିବା । ନାରାୟଣ ଓ ନରୋତ୍ତମ ନରଙ୍କୁ ପ୍ରଣାମ କରି ଗ୍ରନ୍ଥର ଆରମ୍ଭ । ବଦରିକା ଆଶ୍ରମରେ ନରନାରାୟଣଙ୍କର ତପସ୍ୟାର କଥା ବହୁସ୍ଥାନରେ ବର୍ଣ୍ଣନା କରାଯାଇଅଛି । ଆଦର୍ଶ ମନୁଷ୍ୟ ନର । ସେ ନାରାୟଣଙ୍କୁ ପାଇବା ନିମିତ୍ତ ବ୍ୟାକୁଳ । ସେହି ନାରାୟଣ ଅବଶ୍ୟ ଜଗତର ମଙ୍ଗଳ ନିମିତ୍ତ ତପସ୍ୟାରେ ମଗ୍ନ । ଜଗତ ତ ସେହି ନରମାନଙ୍କର ଅବସ୍ଥିତି । ଏହାର ଫଳ ସ୍ୱରୂପ ନର ସ୍ୱୟଂ ନାରାୟଣଙ୍କୁ ଅତି ଘନିଷ୍ଠ ଭାବରେ ଆତ୍ମୀୟରୂପେ, ସଖା ରୂପେ ପାଇ ତାଙ୍କର ଈପ୍ସିତ ଜନକଲ୍ୟାଣରେ ସହାୟତା କରିଛନ୍ତି । ମାତ୍ର ସେ ନାରାୟଣ ହୋଇ ଯାଇ ନାହାନ୍ତି । ନର ଓ ନାରାୟଣ ସବୁକାଳେ ଉପାସକ ଓ ଉପାସ୍ୟ ହୋଇ ରହିଛନ୍ତି । ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ହେ ପାର୍ଥ, ସେହି ପରମ ପୁରୁଷକୁ ଏକ ମାତ୍ର ଭକ୍ତି ବଳରେ ଲାଭ କରାଯାଇ ପାରିବ । ଏହି ଭୂତ ସକଳ ତାହାରି ମଧ୍ୟରେ ଅବସ୍ଥିତ । ସେହି କେବଳ, ସମଗ୍ର ଜଗତରେ ବ୍ୟାପି ରହିଅଛନ୍ତି । ପୁରୁଷ ସ ପରଃ ପାର୍ଥ..... । *(ଅ. ୮/୨୨)*

ଏହି ଶ୍ଳୋକରୁ ଜଣାଯିବ ଭୂତଜଗତ ଈଶ୍ୱରଙ୍କଠାରେ ଅବସ୍ଥିତ ହେଲେ ମଧ୍ୟ ଈଶ୍ୱର ସ୍ୱୟଂ ଭୂତଜଗତରେ ବିବର୍ତ୍ତିତ ବା ପରିବର୍ତ୍ତିତ ହୋଇ ନାହାନ୍ତି । ଏହିପରି ଦ୍ୱୈତଭାବ ଆଉ କେତୋଟି ଶ୍ଳୋକରେ ମଧ୍ୟ ଦର୍ଶାଯାଇଅଛି । କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ ଯୋଗ, ଅଧ୍ୟାୟରେ କୁହାଯାଇଛି ପୁରୁଷ ପ୍ରକୃତିରେ ଅବସ୍ଥିତ ଥାଇ ପ୍ରାକୃତିକ ସୁଖ ଦୁଃଖ ଆଦି ସବୁ ଭୋଗ କରିଥାଏ । ଏହି ଗୁଣସଙ୍ଗ ହିଁ ମନୁଷ୍ୟର ସଦ ଅସଦ ଯୋନିରେ ଜାତ ହେତୁ । ଏହି ଦେହରେ ଆଉ ଏକ ପୁରୁଷ ଅବସ୍ଥିତ । ତାଙ୍କୁ ଉପଦ୍ରଷ୍ଟା, ଅନୁରକ୍ତା, ଭର୍ତ୍ତାଭୋକ୍ତା, ମହେଶ୍ୱର ଏବଂ ପରମାତ୍ମା ନାମରେ କୁହାଯାଇଅଛି ।

ଏହି ସଗୁଣ ପ୍ରକୃତି ଓ ଏହି ପୁରୁଷକୁ ଯେ ଜାଣିପାରେ ସେ ଯେକୌଣସି ପ୍ରକାର ଅବସ୍ଥାରେ ଥାଉ ପଛକେ, ଭଗବଦ୍‌ଯୁକ୍ତ ହୋଇ ରହେ । ଏହି ପରମାତ୍ମାଙ୍କୁ ଅନୁଭବ କରିବା ନିମିତ୍ତ କିଏ ଧ୍ୟାନଯୋଗ, କିଏ ଜ୍ଞାନଯୋଗ, କିଏ ସାଂଖ୍ୟଯୋଗ, କେହି ବା କର୍ମଯୋଗ ଅବଲମ୍ବନ କରିଥାଏ ।

୧୫ଶ ଅଧ୍ୟାୟ ପୁରୁଷୋତ୍ତମ ଯୋଗରେ ଭଗବାନ ଅତି ପରିଷ୍କାର ଭାବରେ ଜୀବ ଓ ଈଶ୍ୱରର ଦ୍ୱୈତଭାବ ପ୍ରକାଶ କରିଅଛନ୍ତି । ଦୁଇ ପ୍ରକାର ପୁରୁଷର ପ୍ରସିଦ୍ଧି ଅଛି । ଜଣେ କ୍ଷର, ଅପର ଅକ୍ଷର । ସମସ୍ତ ଭୂତଶରୀର କ୍ଷରର ଅନ୍ତର୍ଭୁକ୍ତ ଏବଂ କୂଟସ୍ଥ ପୁରୁଷ (ଜୀବାତ୍ମା) ଅକ୍ଷର ନାମରେ ଖ୍ୟାତ । ଏହି କ୍ଷର ଓ ଅକ୍ଷରଠାରୁ ଯେ ସମ୍ପୂର୍ଣ୍ଣ ଭିନ୍ନ ତାଙ୍କୁ ଉତ୍ତମ ପୁରୁଷ ବା ପରମାତ୍ମା ବୋଲି ବର୍ଣ୍ଣନା କରାଯାଇଅଛି । ସେହି ନିର୍ବିକାର ପରମାତ୍ମା ଲୋକତ୍ରୟରେ ପ୍ରବେଶ କରି ପାଳନ କରନ୍ତି । ଯେହେତୁ ମୁଁ କ୍ଷରକୁ ଅତିକ୍ରମ କରିଅଛି ଏବଂ ଅକ୍ଷରଠାରୁ ମୁଁ ଉତ୍ତମ ସେଥିପାଇଁ ଲୋକରେ ଓ ବେଦରେ ମୋତେ ପୁରୁଷୋତ୍ତମ କୁହାଯାଇଛି ।

*ଦ୍ୱାବିମୌ ପୁରୁଷୌଲୋକେ କ୍ଷରଶ୍ଚାକ୍ଷର ଏବଚ*
*କ୍ଷର ସର୍ବାଣି ଭୂତାନି କୂଟସ୍ଥଽକ୍ଷରଉଚ୍ୟତେ ।*

ଶରୀରର ନାମ କ୍ଷେତ୍ର ଏବଂ ଏହି କ୍ଷେତ୍ରକୁ ଯିଏ ଜାଣେ ସେ କ୍ଷେତ୍ରଜ୍ଞ (ଜୀବ) । ଏହି କଥା କହି ଭଗବାନ ପୁଣି କହିଲେ ସମସ୍ତ କ୍ଷେତ୍ରରେ ମୋତେ କ୍ଷେତ୍ରଜ୍ଞ ବୋଲି ଜାଣିବ । କ୍ଷେତ୍ର ଓ କ୍ଷେତ୍ରଜ୍ଞର ଜ୍ଞାନ ହିଁ ପ୍ରକୃତ ଜ୍ଞାନ । ଅଧ୍ୟାୟ ୧୩/୨ : କ୍ଷେତ୍ରଜ୍ଞଞ୍ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ, କ୍ଷେତ୍ର କ୍ଷେତ୍ରଯୋ ଯଦତ୍‌ଜ୍ଞାନଂ ମତଂ ମମ)

ଗୀତାର ଦ୍ୱିତୀୟ ଅଧ୍ୟାୟରେ ଜୀବାତ୍ମାର ଯେସବୁ ଲକ୍ଷଣ ଦିଆଯାଇଛି ତାହା ଦ୍ୱାରା ପରମାତ୍ମାଙ୍କ ସହିତ ତାର ଅଭିନ୍ନତା ପ୍ରତିପାଦନ କରାଯାଇଛି । ପୁରୁଷୋତ୍ତମ ଯୋଗର ଆରମ୍ଭରୁ ପରମପଦ ବା ପରମ ଧାମର ମହିମା ବର୍ଣ୍ଣନା କରିବା ସାଙ୍ଗରେ ଭଗବାନ କହିଛନ୍ତି ଏହି ସନାତନ ଜୀବ ମୋର ହିଁ ଅଂଶ । ଭାଷ୍ୟକାରମାନେ ଭିନ୍ନ ଭିନ୍ନ ମତ କରୁଥିବା ବେଳେ ଜଣେ ସାଧାରଣ ପାଠକ ଜାଣିବ ଜୀବ ଓ ବ୍ରହ୍ମର ଭେଦ ରଖାଯାଇ ଅଛି । ଜୀବ ଓ ପରମେଶ୍ୱର ମଧ୍ୟରେ ସେବକ ଓ ସେବ୍ୟ ଭାବର ପ୍ରକାଶ କରାଯାଇଛି । ସମସ୍ତ ଜୀବ ତାଙ୍କର ଆଦେଶ ପାଳୁଛନ୍ତି ଓ ଜୀବର ଇଚ୍ଛା ତାଙ୍କର ଇଚ୍ଛାନୁସାରେ ନିୟନ୍ତ୍ରିତ ହେଉଛି । ଦ୍ୱୈତ ଅଦ୍ୱୈତ ବାଦର ସମର୍ଥକମାନଙ୍କର ବାଖ୍ୟା କେହି କାହାକୁ ଖଣ୍ଡନ କରିବାରେ ସମର୍ଥ ହୋଇ ନାହାନ୍ତି । ଉଭୟ ସେହି ଏକ ଶ୍ଳୋକକୁ ଭିନ୍ନ ଭିନ୍ନ ଅର୍ଥ କରିଛନ୍ତି । ସାଧାରଣ ପାଠକ ସ୍ଥିର ସିଦ୍ଧାନ୍ତ କରିବା ଅସମ୍ଭବ । ସେହି ଭାଷ୍ୟକାର ମନୀଷିମାନେ ଆମ୍ଭମାନଙ୍କର ଚିର ନମସ୍ୟ । ଆମ୍ଭେମାନେ ସେମାନଙ୍କ ମଧ୍ୟରୁ କାହାର ମତ ପ୍ରତି ଉପେକ୍ଷା ପ୍ରଦର୍ଶନ କରି ପାରିବା ନାହିଁ । ଏହା ହିଁ ଶେଷ କଥା ।

## ବ୍ରହ୍ମ ଓ ଜଗତ :

ଜଗତ ବ୍ରହ୍ମଠାରୁ ଭିନ୍ନ ହେଲେ ମଧ ତାଙ୍କରିଠାରୁ ଜଗତର ଉତ୍ପତ୍ତି ଓ ତାଙ୍କୁ ଆଶ୍ରୟ କରି ଜଗତ ବିସ୍ତୃତ । ଭଗବାନ ଭକ୍ତକୁ କହିଅଛନ୍ତି ହେ ପାର୍ଥ ମୋତେ ସର୍ବଭୂତର ଚିରନ୍ତନ ବୀଜ ବୋଲି ଜାଣିବ । ମୁଁ ସକଳର ପ୍ରବର୍ତ୍ତକ । ମୁଁ ସୃଷ୍ଟିକର୍ତ୍ତା ଓ ସୃଷ୍ଟିର ନିୟନ୍ତା । ମୋର ଅଧିଷ୍ଠାନରେ ପ୍ରକୃତି ଏହି ଚରାଚର ବିଶ୍ୱ ପ୍ରସବ କରିଅଛି । ମୋର ଅଧିଷ୍ଠାତୃତ୍ୱରେ ଏହି ଜଗତ ନିତ୍ୟ ନୂତନଭାବରେ ପରିବର୍ତ୍ତିତ ହେଉଅଛି । ମୋଠାରୁ ଆଉ କିଛି ଶ୍ରେଷ୍ଠ ନାହିଁ । ଗୁନ୍ଥାଯାଇଥିବା ମଣିଗୁଡିକ ସୂତାକୁ ଆଶ୍ରୟ କରି ରହିବା ପରି ଏହି ବିଶ୍ୱ ମୋତେ ଅବଲମ୍ବନ କରି ଅଧିଷ୍ଠିତ ହୋଇଅଛି । (ବୀଜମାଂ ସର୍ବ ଭୂତାନାଂ-*ଅ.୭/୧୦*) ଭଗବାନ ଆଉ ମଧ କହୁଅଛନ୍ତି ତୁମର ଭୂମି, ବାୟୁ, ଜଳ, ଅଗ୍ନି, ଆକାଶ, ମନ, ବୁଦ୍ଧି, ଅହଂକାର ଏହି ଆଠଗୋଟି ମୋର ପ୍ରକୃତି । ଏହା ଅପରା ପ୍ରକୃତି - *ଅ.୭/୪*। ଜୀବ ସ୍ୱରୂପ ଯେଉଁ ପ୍ରକୃତି ତାହା ଏହା ଅପେକ୍ଷା ଉତ୍କୃଷ୍ଟ ଓ ଭିନ୍ନ । ତାହା ଦ୍ୱାରା ଜଗତର ସ୍ଥିତି ସାଧିତ ହେଉଅଛି । ହେ ଅର୍ଜୁନ, ସମଗ୍ର ଭୂତ ଜଗତ ଏହି ଅପରା ଓ ପରା, ପ୍ରକୃତିରୁ ଉତ୍ପନ୍ନ ହୋଇଅଛି । ଏହି ଦୁଇ ପ୍ରକୃତି ମୋଠାରୁ ପ୍ରାଦୁର୍ଭୂତ । ସୁତରାଂ ମୁଁ ସମଗ୍ର ଜଗତର ସୃଷ୍ଟି ଓ ସଂହାରର କାରଣ । ସର୍ବତ୍ର ଗତି କରୁଥିବା ବାୟୁ ଯେପରି ଆକାଶରେ ଥାଏ ଅଥଚ ଆକାଶ ସହିତ ଲିପ୍ତ ନ ଥାଏ ଚରାଚର ବିଶ୍ୱ ସେହିପରି ଈଶ୍ୱରଙ୍କର ବିଧୃତ । ସେ ସମଗ୍ର ବିଶ୍ୱଧାରଣେ କରି ନିର୍ବିକାର ଭାବରେ ଅବସ୍ଥାନ କରନ୍ତି । ପରସ୍ପର ଅସଂଶ୍ଳିଷ୍ଟ ହୋଇଲେ ମଧ ଆଧାର ଓ ଆଧେୟ ଭାବରେ କୌଣସି ବାଧା ରହିନାହିଁ ।

ପ୍ରଳୟ କାଳରେ ସମଗ୍ର ଜଗତ ଈଶ୍ୱରଙ୍କର ତ୍ରିଗୁଣାତ୍ମକ ମାୟାରେ ଲୟ ପାଇଥାଏ । ପୁଣି ସୃଷ୍ଟି ସମୟରେ ତାହାଙ୍କଠାରୁ ଉଦ୍‌ଭବ ହୁଏ । ଭଗବାନ ନିଜ ପ୍ରକୃତିକୁ ଅଧିଷ୍ଠାନ କରି କର୍ମବଶବର୍ତ୍ତୀ ଏହି ଭୂତ ସମସ୍ତଙ୍କୁ ପୁନଃ ପୁନଃ ସଂସାରକୁ ପ୍ରେରଣ କରିଥାଆନ୍ତି । ଯଦିଓ ସେ ବିଶ୍ୱ ସୃଷ୍ଟିର ବିଧାୟକ ତଥାପି ବିଶ୍ୱ ତାହାଙ୍କୁ ବନ୍ଧନ କରିପାରେ ନାହିଁ । ସେ ସବୁ କାର୍ଯ୍ୟର ଅନାସକ୍ତ ଓ ଉଦାସୀନ ଥାଆନ୍ତି ( ୧୫ଅ. ସର୍ବଭୂତାନି କୌନ୍ତେୟ...) ଭଗବାନ ଏହି ବିଶ୍ୱ ଚରାଚରର ଏକ ଅଂଶ ଭାବରେ ବ୍ୟାପ୍ତ ହୋଇ ଅବସ୍ଥିତ ଅଛନ୍ତି । ଏହି ବିଶ୍ୱ ତାଙ୍କ ତୁଳନାରେ କେତେ କ୍ଷୁଦ୍ର ତାହା କଳ୍ପନା କରିବା କଷ୍ଟ । ବିଭୂତି ଯୋଗର ପ୍ରତ୍ୟେକଟି କଥା ଦ୍ୱାରା ବୁଝାଯାଏ ସେ ବିଶ୍ୱର ପ୍ରାଣ, ବିଶ୍ୱଧାତ୍ରୀ । ସୃଷ୍ଟିସ୍ଥିତି ପ୍ରଳୟ ତାଙ୍କର ହିଁ କାର୍ଯ୍ୟ ।

## ଜୀବାତ୍ମା ଓ ପରମାତ୍ମାର ସମ୍ବନ୍ଧ :

ଭୂତଜଗତ ପରମାତ୍ମାଙ୍କଠାରୁ ବିସ୍ତୃତ ତଥାପି ଜୀବାତ୍ମା ସହିତ ତାଙ୍କର ସଂପର୍କ ନିକଟତର । ସେ ଜଗତର ନିୟନ୍ତା । ମାତ୍ର ଜୀବାତ୍ମା ସହିତ ତାଙ୍କର ସମ୍ପର୍କ ଅତି ମଧୁର । ପିତା ସହିତ ପୁତ୍ରର

ସଖା ସହିତ ସଖାର, ପ୍ରିୟଜନ ସହିତ ପ୍ରିୟଜନର ଯେଉଁ ସମ୍ପର୍କ, ପରମାତ୍ମାଙ୍କ ସହିତ ଜୀବାତ୍ମାର ସେହି ସମ୍ପର୍କ । ସେଇଥିପାଇଁ ବିଶ୍ୱରୂପ ଦର୍ଶନରେ ସ୍ତମ୍ଭିତ ହୋଇ ଅର୍ଜୁନ ପ୍ରାର୍ଥନା କରୁଅଛନ୍ତି । ହେ ଦେବ ! ମୋର ଅପରାଧ କ୍ଷମାକର (ପିତ୍ରେବ ପୁତ୍ରସ୍ୟ ସଖେବ-ଅ.୧୧/୪୪) । ଜୀବାତ୍ମା ପରମାତ୍ମାଙ୍କୁ ଅତି ଘନିଷ୍ଠଭାବରେ ପାଇବାକୁ ଚାହେଁ ଏବଂ ସେଥିନିମିତ୍ତ ସେ ବ୍ୟାକୁଳ ହେଉଥାଏ । ଏହି ବ୍ୟାକୁଳତା ଯୋଗୁ ସେ ଯୋଗ ସାଧନ କରେ । ସେଥିପାଇଁ ଗୀତାର ପ୍ରାୟ ପ୍ରତି ଅଧ୍ୟାୟରେ ଯୋଗ କଥା କୁହାଯାଇଛି ।

## ମୁକ୍ତି :

ନିଷ୍କାମ କର୍ମଯୋଗ, ଜ୍ଞାନଯୋଗ ଏବଂ ଭକ୍ତିଯୋଗର ସାଧନା ଦ୍ୱାରା ଜୀବାତ୍ମା ନିଷ୍କଳୁଷ ହୋଇ ବିମଳ ଶାନ୍ତି ଉପଭୋଗ କରିଥାଏ । ସର୍ବଭୂତରେ ସମଦର୍ଶନ, ସର୍ବତ୍ର ଐଶୀ ବିଭୂତିର ଅନୁଭୂତି, ପ୍ରଭୃତି ସେତେବେଳେ ତାର ସ୍ୱଭାବ ସିଦ୍ଧ ହୋଇଯାଏ । ସକଳ ବନ୍ଧନ ତାର ସେତେବେଳେ ଛିନ୍ନ ହୋଇଯାଏ । କର୍ମ, ଜ୍ଞାନ ପ୍ରଭୃତି ତାହାକୁ ଅଜ୍ଞାନରେ ଆବଦ୍ଧ କରି ରଖିପାରେ ନାହିଁ । କେବଳ ଭଗବଦ୍ ପ୍ରୀତ୍ୟର୍ଥେ କର୍ମ କଲେ, ସେହି କର୍ମ, ସାଧକକୁ ମୁକ୍ତିର ଆହ୍ୱାନ ଦେଇପାରେ । ଭଗବାନଙ୍କର ସାଧର୍ମ୍ମ୍ୟ ଲାଭ ଓ ଭଗବାନଙ୍କର ମଧ୍ୟରେ ବାସର ନାମ ମୁକ୍ତି ବା ପରମପଦ ପ୍ରାପ୍ତି । (ଜନ୍ମବନ୍ଧବିନିର୍ମୁକ୍ତ ଅ.୨/୫୧) । ଯାହା ମନରେ ସାମ୍ୟ ପ୍ରତିଷ୍ଠିତ ହୋଇ ପାରିଛି ସେ ଇହ ଲୋକରେ ମଧ୍ୟ ପରମପଦ ଲାଭ କରିଥାଏ । ସମଦର୍ଶୀ ବ୍ୟକ୍ତି ବ୍ରହ୍ମରେ ଅବସ୍ଥିତ ଥାଆନ୍ତି । ଯେତେଦିନ ପର୍ଯ୍ୟନ୍ତ ଜୀବ ପରମପଦ ଲାଭ କରିପାରିନଥାଏ ସେତେଦିନଯାଏ ତାର ପୃଥିବୀ ଛାଡିବାର ଉପାୟ ନଥାଏ । ଯେତେ ଶ୍ରେଷ୍ଠତ୍ୱ ସେ ପାଇଥିଲେ ମଧ୍ୟ ତାକୁ ବାରମ୍ବାର ସଂସାରରେ ଜନ୍ମ ଗ୍ରହଣ କରିବାକୁ ପଡୁଥାଏ । କିନ୍ତୁ ବ୍ରହ୍ମପ୍ରାପ୍ତି ପରେ ତାର ଆଉ ଜନ୍ମ ଗ୍ରହଣ କରିବା ଆବଶ୍ୟକ ହୁଏ ନାହିଁ । ଜୀବ ପକ୍ଷରେ ଭଗବଦ୍ ପ୍ରସାଦ ବ୍ୟତୀତ ଶାଶ୍ୱତ ଅବ୍ୟୟପଦ ଲାଭ କରିବା ସମ୍ଭବପର ହୋଇନଥାଏ । କେବଳ ଭଗବାନଙ୍କଠାରେ ସମସ୍ତ ମନ ପ୍ରାଣ ଅର୍ପଣ କଲାପରେ ଜୀବର ମୁକ୍ତି । ତାଙ୍କ ପାଦରେ ପରା ଭକ୍ତି ସମର୍ପଣ କଲେ ସେ ଦୟାକରି ତାଙ୍କ ମଧ୍ୟରେ ଜୀବକୁ ସ୍ଥାନ ଦିଅନ୍ତି । ଜୀବ ସେତେବେଳେ ତାହାର ସାଧର୍ମ୍ମ୍ୟ ଲାଭ କରି ଚିରଶାନ୍ତି ଉପଭୋଗ କରେ । ଏହା ହିଁ ଗୀତାର ମୋକ୍ଷ ଭାବରେ ବର୍ଣ୍ଣିତ ।

ସମସ୍ତ ବିଦ୍ୟା ମୋଟାମୋଟି ଦୁଇ ଶ୍ରେଣୀରେ ବିଭକ୍ତ । ଏକ ତତ୍ତ୍ୱ ବିଷୟକ (theoritical) ଓ ଅନ୍ୟ ବ୍ୟବହାର ବିଷୟକ (practical) ବିଦ୍ୟାର ସୁ-ପ୍ରୟୋଗ ନିମିତ୍ତ ତତ୍ତ୍ୱାଂଶ ଜ୍ଞାନ ଅତ୍ୟନ୍ତ ଆବଶ୍ୟକ । ଭଗବଦ୍‌ଗୀତା ତତ୍ତ୍ୱବିଷୟକ ହେଲେ ପରବର୍ତ୍ତୀ ୧୫ଟି ବିଶେଷକରି ପ୍ରୟୋଗାତ୍ମକ ବୋଲି ମନେ କରି ଆଲୋଚନା କରିବା ।

●

# ଉତଥ୍ୟ ଗୀତା

*(ଉତଥ୍ୟ ଋଷିଙ୍କଦ୍ୱାରା ରାଜାଙ୍କପକ୍ଷେ ଧର୍ମପାଳନର ଆବଶ୍ୟକତା, ଧର୍ମାଚରଣର ମହତ୍ୱ ଓ ରାଜଧର୍ମର ବର୍ଣ୍ଣନା)*

ଶରଶଯ୍ୟାରେ ଥାଇ ରାଜନୀତି ପ୍ରସଙ୍ଗ ବର୍ଣ୍ଣନରେ ପିତାମହ ଭୀଷ୍ମ ଯୁଧିଷ୍ଠିରଙ୍କୁ ଉତଥ୍ୟ ଗୀତା ଶୁଣାଇଲେ । ସେ କହିଲେ ଉତଥ୍ୟ ବ୍ରହ୍ମବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଙ୍ଗିରାଙ୍କର ପୁତ୍ର ଥିଲେ । ଯବନାଶ୍ୱ ରାଜାଙ୍କର ପୁତ୍ରଥିଲେ ମାନ୍ଧାତା । ତାଙ୍କୁ ଉତଥ୍ୟ କ୍ଷତ୍ରିୟ ଧର୍ମର ଉପଦେଶ ଦେଇଥିଲେ । ସେ କହିଥିଲେ ରାଜ ଧର୍ମର ପ୍ରଚାର ଓ ପାଳନ କରିବା ଅର୍ଥ, ବିଷୟ ସୁଖଭୋଗ ନୁହେଁ । ରାଜା ସମ୍ପୂର୍ଣ୍ଣ ଜଗତର ରକ୍ଷକ । ଧର୍ମାଚରଣ କଲେ ସେ ଦେବତା ପଦ ଓ ଅଧର୍ମାଚରଣ ଫଳରେ ନରକ ଗତି ପାଇଥାଏ । ସମସ୍ତ ପ୍ରାଣୀ ଧର୍ମରେ ସ୍ଥିତ । ଧର୍ମ ରାଜାଙ୍କ ଉପରେ ପ୍ରତିଷ୍ଠିତ । ଉତ୍ତମଭାବରେ ଧର୍ମର ପାଳନ ଓ ତଦ୍ ଅନୁକୂଳ ରାଜ୍ୟ ଶାସନ କରି ରାଜା ଦୀର୍ଘକାଳ ପୃଥିବୀର ସ୍ୱାମୀ ହୁଏ ଓ ପରମଧର୍ମାତ୍ମା ହେଲେ ଶ୍ରୀସଂପନ୍ନ ହୋଇ ସେ ସାକ୍ଷାତ ଧର୍ମର ସ୍ୱରୂପ ହୁଏ । ରାଜାଙ୍କର ସୁଶାସନ ନ ରହିଲେ ପାପ ପ୍ରବୃତ୍ତି ବଢ଼ିଯାଏ, ବ୍ୟକ୍ତିଗତ ସ୍ୱତ୍ୱ ଓ ଧର୍ମବ୍ୟବସ୍ଥା ବିପନ୍ନ ହୁଏ । ନିଜର ସ୍ତ୍ରୀ, କ୍ଷେତବାଡି, ଘରଦ୍ୱାର, ପଶୁସଂପଦର ରକ୍ଷଣାବେକ୍ଷଣ ଅସମ୍ଭବ ହୋଇପଡେ । ଶାସ୍ତ୍ର ଅଧ୍ୟୟନ ଯଜ୍ଞ ଅନୁଷ୍ଠାନ ବନ୍ଦ ହୋଇଯାଏ । ଏହି ଅବସ୍ଥା ନିବାରଣ କରି ନ ପାରି ମନୁଷ୍ୟର ମନ ବୃଦ୍ଧ ପଶୁର ମନ ପରି ବିଚଳିତ ହୁଏ ।

ମହର୍ଷିମାନେ ଲୋକ ଓ ପରଲୋକ କୁ ଦୃଷ୍ଟିରେରଖି ମହାଶକ୍ତିଶାଳୀ ରାଜଅନୁଷ୍ଠାନ ସୃଷ୍ଟି କରିଥିଲେ । ଧର୍ମ ଯେଉଁଥିରେ ବିରାଜ କରେ ତାକୁ ରାଜା କହନ୍ତି । (ଯସ୍ମିନ ଧର୍ମୋ ବିରାଜେତ ତଂ ରାଜାନଂ ପ୍ରବିଯାତେ) ଧର୍ମ ବୃଦ୍ଧି ଫଳରେ ପ୍ରାଣୀମାନଙ୍କର ସମୃଦ୍ଧି ହୋଇଥାଏ । ଧନରୁ ଧର୍ମର ଉତ୍ପତ୍ତି ହୁଏ । ସମସ୍ତଙ୍କୁ ଧାରଣ କରିଥିବା ହେତୁ ଏହାକୁ ନିଶ୍ଚିତଭାବରେ ଧର୍ମବୋଲି କୁହାଯାଏ । ପ୍ରାଣୀମାନଙ୍କର କଲ୍ୟାଣ ନିମିତ୍ତ ବ୍ରହ୍ମା ଧର୍ମର ସୃଷ୍ଟି କରିଅଛନ୍ତି । ତେଣୁ ପ୍ରଜାମାନଙ୍କୁ ଅନୁଗୃହୀତ କରିବା ନିମିତ୍ତ ରାଜା ଧର୍ମର ପ୍ରଚାର କରିବା ଉଚିତ ।

କାମ କ୍ରୋଧକୁ ଅନାଦର କରି ଧର୍ମପାଳନ ରାଜାଙ୍କର କର୍ତ୍ତବ୍ୟ । ବ୍ରହ୍ମଜ୍ଞାନୀ ବ୍ରାହ୍ମଣଙ୍କ ପ୍ରତି ମତ୍ସରବିହୀନ ହୋଇ ରାଜା ସେମାନଙ୍କର କାମନା ପୂରଣ କରିବ । ବିରୋଚନଙ୍କ ପୁତ୍ର ବଳି ଏହି ପ୍ରକାର ବ୍ରାହ୍ମଣମାନଙ୍କ ପ୍ରତି ଅସୂୟା ପ୍ରଦର୍ଶନ କରିବାରୁ ଶ୍ରୀଦେବୀ (ଲକ୍ଷ୍ମୀ) ତାଙ୍କୁ ତ୍ୟାଗ କରି ଇନ୍ଦ୍ରଙ୍କର ଆଶ୍ରିତ ହେଲେ । ଶ୍ରୀଦେବୀଙ୍କର ଏକ ପୁତ୍ରର ନାମ ଦର୍ପ । ଦର୍ପ ଅଧର୍ମରୁ ଜାତ ହୋଇଥାଏ । ଦର୍ପ ମନୁଷ୍ୟ, ଦେବତା , ଅସୁର ଏପରିକି ରାଜାଙ୍କୁ ମଧ୍ୟ ଜୟକରି ସେମାନଙ୍କର କ୍ଷୟ କରିଥାଏ । ମନୁଷ୍ୟ ଦର୍ପକୁ ଜୟ କରେ । ରାଜା ଦର୍ପ ଦ୍ୱାରା ପରାଜିତ ହେଲେ ତାଙ୍କୁ ଦାସ ହେବାକୁ ପଡେ ।

ଉତଥ୍ୟ ଆଉ ମଧ ମାନ୍ଧାତାଙ୍କୁ ଉପଦେଶ ଦେଇ କହିଲେ - ଦର୍ପ ଓ ଅଧର୍ମର ସେବା ତୁମେ ପରିତ୍ୟାଗ କରିବ । ମତ୍ତ, ପ୍ରମତ୍ତ, ପାଷାଣ୍ଡ, (ନାସ୍ତିକ) ଓ ଉନ୍ମତ୍ତମାନଙ୍କ ନିକଟକୁ ତୁମେ ଯିବ ନାହିଁ । ନିଗୃହୀତ ଅମାତ୍ୟ, ସ୍ତ୍ରୀ, ବିଷୟଭୋଗ, ଦୁର୍ଗମ ପର୍ବତ, ହସ୍ତୀ, ଅଶ୍ୱ, ସରିସୃପ ଏମାନଙ୍କ ଠାରୁ ଦୂରରେ ରହିଥିବ । କୃପଣତା, ଅଭିମାନ, ଦମ୍ଭ ଓ କ୍ରୋଧ ପରିତ୍ୟାଗ କରିବ । ଅଜ୍ଞାତ ସ୍ତ୍ରୀ, ବେଶ୍ୟା ପରଭାର୍ଯ୍ୟା, କନ୍ୟା ସ୍ଥାନୀୟା ମାନଙ୍କ ସହିତ ମିଥୁନଭାବ ତ୍ୟାଗ କରିବ । କ୍ଷତ୍ରୀୟ ରାଜା ଅନାଚାର କଲେ ଅତିବୃଷ୍ଟି, ଅନାବୃଷ୍ଟି, ବ୍ୟାଧି ଆଦି ପ୍ରଜାମାନଙ୍କୁ ଆକ୍ରମଣ କରେ । ନକ୍ଷତ୍ର ଧୂମକେତୁ ପ୍ରଭୃତି ଭୟଙ୍କର ଗ୍ରହମାନେ ଆକାଶରେ ଦେଖାଯାଆନ୍ତି । ରାଜ୍ୟ ଶାସନରେ ବହୁତ ଉତ୍ପାତ ମଧ ଦେଖାଯାଏ । ରାଜା ରାଜକୋଷର ଧନକୁ ସ୍ୱ-ଅର୍ଜିତଧନ ବୋଲି ମନେକଲେ ସମାଜମଙ୍ଗଳ ହୋଇପାରେ ନାହିଁ ।

ଉତଥ୍ୟ ପୁଣି କହିଲେ ରାଜା ଧର୍ମଚାରୀହେଲେ ଦେଶରେ ବୃଷ୍ଟି ଠିକ୍ ହୁଏ । ପ୍ରଜାମାନେ ସୁଖରେ ପରିଚାଳିତ ହୁଅନ୍ତି । ଧର୍ମଚାରୀ ସମାଜରେ ବ୍ରାହ୍ମଣର ପ୍ରଧାନ ଧର୍ମ ବ୍ରହ୍ମଚର୍ଯ୍ୟ, ତପସ୍ୟା, ମନ୍ତ୍ର ଓ ସତ୍ୟ, କ୍ଷତ୍ରୀୟର ଧର୍ମ ଶାସନ, ଦଣ୍ଡନୀତି, ବୈଶ୍ୟର କୃଷି, ବାଣିଜ୍ୟ ଓ ଶୁଦ୍ରର ଧର୍ମ ସେବା । ରାଜାର ସୁ-ଶାସନରେ ଚାରିବର୍ଣ୍ଣ, ଚାରିବେଦ ଓ ଚାରି ଆଶ୍ରମ ମୁକ୍ତ ହୁଅନ୍ତି । ରାଜା କୁ-ଶାସନ କଲେ ଗାର୍ହପତ୍ୟ, ଦକ୍ଷିଣାଗ୍ନି, ଆଃବହନୀୟ ଏହି ତିନିଅଗ୍ନି ଋକ୍, ଯଜୁ ସାମ, ଏହି ତିନି ବିଦ୍ୟା ଓ ଦକ୍ଷିଣା ଯଜ୍ଞ ସବୁ ବିପଦଗ୍ରସ୍ତ ହୁଅନ୍ତି । ଧର୍ମାତ୍ମା ରାଜା, ପ୍ରଜାମାନଙ୍କର କର୍ତ୍ତା ଓ ଅଧର୍ମଯୁକ୍ତ ରାଜା ପ୍ରଜାମାନଙ୍କର ହର୍ତ୍ତା ହୋଇଥାଆନ୍ତି । କୁଶାସକର ଭାର୍ଯ୍ୟା ପୁତ୍ର ବନ୍ଧୁ ଓ ସୁହୃଦ ସମସ୍ତେ ସମକାଳରେ ଶୋକଗ୍ରସ୍ତ ହୋଇଥାନ୍ତି । ନରପତି ଅଧାର୍ମିକ ହେଲେ ହସ୍ତୀ, ଅଶ୍ୱ, ଗୋ-ଉଷ୍ଟ୍ର, ଅଶ୍ୱେତର (ଖେଚର) ଓ ଗର୍ଦ୍ଦଭ ପ୍ରଭୃତି ଜନ୍ତୁ ଅବସନ୍ନ ହୋଇଯାନ୍ତି । ବଳବାନ ପ୍ରାଣୀ ଦୁର୍ବଳ ପ୍ରାଣୀମାନଙ୍କର ରକ୍ଷା ନିମିତ୍ତ ଈଶ୍ୱର ସୃଷ୍ଟ; ତେଣୁ ରାଜା ଦୁର୍ବଳକୁ ଅପମାନିତ କରିବ ନାହିଁ । ଦୁର୍ବଳ ପୀଡ଼ା ପାଇଲେ ଆଶ୍ରମ ନିବାସୀ ଅଗ୍ନିଭଳି ଚକ୍ଷୁରୁ ଯେଉଁ ଅଶ୍ରୁ ବାହାରେ ତାହା ସବଳର ସର୍ବକ୍ଷୟ ଘଟାଇଥାଏ । ମନୁଷ୍ୟ ନିରପରାଧ ଥାଇ ଅନ୍ୟର ମିଥ୍ୟା ଅଭିଯୋଗରେ ଚକ୍ଷୁରୁ ଅଶ୍ରୁତ୍ୟାଗ କଲେ ଓ ରାଜା ତାକୁ ସୁରକ୍ଷା ନଦେଲେ, ଦୈବୀ ଦଣ୍ଡ ମିଳିଥାଏ । ଗୋ-ପାଳନ ସଦ୍ୟ ଫଳ ଦେଇନଥାଏ । ସେହିପରି ପାପକର୍ମ ସଦ୍ୟ ଫଳ ନ ଦେଇ ବିଳମ୍ବରେ ମଧ ପୁତ୍ର ପୌତ୍ର ଦୌହିତ୍ର ଠାରେ ଫଳିଥାଏ । ରାଜପୁରୁଷମାନେ ରାଜାଦେଶରେ ଧର୍ମତଃ ସ୍ୱ-ସ୍ୱ କର୍ମ ସମ୍ପାଦନ କରିବା କଥା । ଏହାର ବ୍ୟତିକ୍ରମ ହେଲେ ନରପତିଙ୍କର ପ୍ରଭୂତ କ୍ଷତି ଘଟିଥାଏ । ରାଜା ଅଶିଷ୍ଟ ମନୁଷ୍ୟମାନଙ୍କୁ ଶାସନ ନକଲେ ତାକୁ କଳି ଆଶ୍ରୟ କରେ । ଯଦି କାୟ କର୍ମ ଓ ବାକ୍ୟରେ ରାଜା ସମସ୍ତଙ୍କୁ ପରିତ୍ରାଣ କରନ୍ତି; ଅପରାଧୀ ପୁତ୍ର ପ୍ରତି ମଧ କ୍ଷମା ଆଚରଣ କରି ନ ଥାନ୍ତି, ଯଥା ନିୟମରେ ସମବିଭାଗ କରି ଭୋଜନ କରନ୍ତି, ଅମାତ୍ୟମାନଙ୍କର ଅବମାନନା କରନ୍ତି ନାହିଁ ଓ ବଳଦର୍ପିତ ବ୍ୟକ୍ତିକୁ ଦମନ କରନ୍ତି, ତାହାହେଲେ ସେ ଧର୍ମକାରି ବୋଲାଇ ଥାଆନ୍ତି । ରାଜ୍ୟରକ୍ଷା

ଦସ୍ୟୁଦଳନ ଓ ସଂଗ୍ରାମରେ ଜୟଲାଭ କରି ରାଜା ଜନ ସମାଜକୁ ପରିଚାଳନ କରନ୍ତି । କୃପଣ, ଅନାଥ, ବୃଦ୍ଧ ମାନଙ୍କର କ୍ଲେଶ ନିବାରଣ କରି, ରାଜା ସେମାନଙ୍କୁ ଆନନ୍ଦ ଦେବା କର୍ତ୍ତବ୍ୟ । ସତ୍ୟ ପାଳନ, ପ୍ରୀତି ସହିତରେ ଭୂମିଦାନ, ଅତିଥି ସତ୍‌କାର, ଭୃତ୍ୟ ବର୍ଗଙ୍କର ଭରଣପୋଷଣ , ପ୍ରାଣ ଓ ଇନ୍ଦ୍ରିୟସଂଯମୀ ଋତ୍ୱିକ ପୁରୋହିତ ଓ ଆଚାର୍ଯ୍ୟ ମାନଙ୍କର ସମାଜର ଆବଶ୍ୟକ ସ୍ଥଳରେ ଅନୁଗ୍ରହ ଓ ନିଗ୍ରହ ପ୍ରଦର୍ଶନ ରାଜାଙ୍କର ମଧ କର୍ତ୍ତବ୍ୟ । ଯେଉଁ ନୃପତି ଦଣ୍ଡବିତ୍ ପ୍ରାଜ୍ଞ ଓ ଶୂର ସେହି କେବଳ ନିଜ ରାଜ୍ୟ ରକ୍ଷାକରିବାକୁ ସମର୍ଥ ହୁଅନ୍ତି । ହେ ରାଜା ମାନ୍ଧାତା, ତୁମେ ସତତ ପ୍ରମାଦ ଶୂନ୍ୟ ହୋଇ କ୍ଷମା, ବୁଦ୍ଧି, ଧୃତି, ପ୍ରାଣୀଗଣଙ୍କର ସତ୍ତ୍ୱ ଜିଜ୍ଞାସା, ସାଧୁ ଓ ଅସାଧୁ ବିଚ୍ଛେଦ, ସେନା ସଂଗ୍ରହ, ଦାନ ଓ ମଧୁର ବାକ୍ୟଯୁକ୍ତ ହେବ । ଦଣ୍ଡଜ୍ଞାନଶୂନ୍ୟ, କ୍ଲୀବ, ବୁଦ୍ଧିହୀନ ନୃପତି ରାଜ୍ୟ ରକ୍ଷା କରିବାରେ ଅସମର୍ଥ ହୋଇଥାଏ । ତୁମ୍ଭେ ସଦ୍‌କୁଳଜାତ, ଅନୁଗତ, ଦକ୍ଷ, ବହୁଶ୍ରୁତ, ଅଭିରୂପ ଅମାତ୍ୟମାନଙ୍କ ସହିତ ତାପସାଶ୍ରମୀ ମାନଙ୍କର ମଧ ବୁଦ୍ଧି ପରୀକ୍ଷା କରିବ । ତୁମେ ପ୍ରାଣୀମାନଙ୍କର ପରମଧର୍ମ ଅବଗତ ହୋଇ ପାରିଲେ ସ୍ୱଦେଶରେ ତୁମ୍ଭର ଧର୍ମ ବିନଷ୍ଟ ହେବ ନାହିଁ । ଅର୍ଥ ଓ କାମ ଅପେକ୍ଷା ଧର୍ମ ଶ୍ରେଷ୍ଠ, ତେଣୁ ଧର୍ମାତ୍ମାମାନେ ଇହଲୋକ ଓ ପରଲୋକରେ ସୁଖଭୋଗ କରିଥାନ୍ତି । ହେ ମାନ୍ଧାତା ତୁମ୍ଭେ ନିଜର ଓ ପରର ଛିଦ୍ର ଅନୁସନ୍ଧାନ କରିବ । ଅନ୍ୟ ଲୋକ ଯେପରି ରାଜାଙ୍କର ଛିଦ୍ର ଦେଖି ପାରିବେ ନାହିଁ, ସେଥିପାଇଁ ଆତ୍ମଛିଦ୍ର ସଂଗୋପନ ରାଜାଙ୍କର କର୍ତ୍ତବ୍ୟ । ହେ ରାଜା, ତୁମ୍ଭେ ଏହି ପ୍ରକାର ଆଚରଣ କଲେ ମହାତେଜସ୍ୱୀ ଦେବର୍ଷି, ପିତୃଗଣ, ଗନ୍ଧର୍ବଗଣ, ଇହଲୋକ ଓ ପରଲୋକରେ ତୁମ୍ଭପରି ଧର୍ମବୃତ୍ତି ରାଜାଙ୍କର ଯଶକୀର୍ତ୍ତନ କରିବେ ।

ଭୀଷ୍ମ ଏହିପରି ଉତଥ୍ୟଗୀତା ମାଧମରେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଉପଦେଶ ପ୍ରଦାନ କରିଥିଲେ ।



ବେଳେବେଳେ କୌଣସି କାରଣନଥାଇ ମନ ଖରାପ ହୁଏ କାହିଁକି ?

ବାବା-ସେଟା ଦୁଷ୍କୃତିର ଫଳ । ସେତିକିବେଳେ ଜୋର୍ କରି ନାମକୁ ଧର ।
''ହାତୀ ବିନା ଓଳିଆରେ ସନ୍ତୁଷ୍ଟ ନୁହଁ ।''

ଆମେ ବେଶୀ ଚାହୁଁଛୁ । ତେଣୁ ବେଶୀ ଦୁଃଖ ପାଉଛୁ । ଯାହାର କିଛି ନାହିଁ ତାର ମଧ ଅଭାବ କିଛି ନାହିଁ ।

ଜୀବନର ଯଜ୍ଞେ ଯହିଁ ହୀନ ଅକିଞ୍ଚନ
ଲଭନ୍ତି ଆହୂତି ତହିଁ ପାରିଛ ଆସନ
ହେ ଦରିଦ୍ର ସଖା, ନିଖିଳର ରାଜେଶ୍ୱର
କରିବାକୁ ଏ ଜୀବନ ସୁନ୍ଦର ଅମର ।

*ବାୟାବାଣୀ....*

# ବାମଦେବ ଗୀତା

*(ରାଜୋଚିତ ଧର୍ମ, ରାଜା ଓ ରାଜ୍ୟ ନିମିତ୍ତ ହିତକର କାର୍ଯ୍ୟ, ବିଜୟ ଅଭିଳାଷୀ ରାଜାଙ୍କର ଧର୍ମ ଅନୁକୂଳ ଆଚରଣ ଓ ଯୁଦ୍ଧ ନୀତିର ବର୍ଣ୍ଣନା )*

ଯୁଧିଷ୍ଠିରଙ୍କ ପ୍ରଶ୍ନରେ ଭୀଷ୍ମ, ପୂର୍ବରୁ ମହର୍ଷି ବାମଦେବ ବସୁଧାଧୀପତି ବସୁମନାଙ୍କୁ ରାଜା ଧର୍ମମାର୍ଗରେ ଅବସ୍ଥାନ କରିବାର ଅଭିଳାଷୀ ହେଲେ କି ପ୍ରକାର ଧାର୍ମିକ ହେବେ, ସେ ବିଷୟରେ ଯେଉଁ ଉପଦେଶ ଦେଇଥିଲେ ତାହା ବାମଦେବ ଗୀତା ଭାବରେ ପରିଚିତ ।

ବାମଦେବ କହିଲେ ନରପତିମାନେ କେବଳ ଧର୍ମରେ ରହି ଏହି ପୃଥିବୀକୁ ଜୟ କରନ୍ତି । ଅର୍ଥସିଦ୍ଧି ଅପେକ୍ଷା ଧର୍ମସିଦ୍ଧିକୁ ରାଜା ବିଶେଷ ଗୁରୁତ୍ୱ ଦେବେ । ରାଜାଙ୍କର ସଚ୍ଚିବ ଦୁଷ୍ଟ ଓ ପାପିଷ୍ଠ ଥାଇ ସେ ନିଜେ ଯଦି ଧର୍ମର ହାନିକରନ୍ତି ତେବେ ସେ ସପରିବାର ଦୁଃଖଭୋଗ କରନ୍ତି । ରାଜା ଯଦି ଅର୍ଥାନୁଷ୍ଠାନ ଶୂନ୍ୟ (ଅର୍ଥବ୍ୟୟ ଓ ଲାଭର ମାର୍ଗ ନ ଜାଣି) କାମାଚାରୀ ଓ ଆତ୍ମ ଶ୍ଳାଘୀ ହୁଅନ୍ତି ତେବେ ସେ ସମୁଦାୟ ପୃଥିବୀକୁ ଜୟଲାଭ କଲେ ମଧ୍ୟ ସତ୍ୱର ବିନଷ୍ଟ ହୁଅନ୍ତି । ଏହାର ବିପରୀତରେ ରାଜା ଯଦି କଲ୍ୟାଣଗ୍ରାହୀ, ଅସୂୟା ବିହୀନ, ଜିତେନ୍ଦ୍ରିୟ ଓ ମତିମାନ ହୁଅନ୍ତି ତାଙ୍କର ଯଶ ବୃଦ୍ଧି ହୁଏ । ଯେଉଁ ରାଜା ନିଜକୁ ଧର୍ମ, ଅର୍ଥ, କାମ, ବୁଦ୍ଧି ଓ ମିତ୍ର କେଉଁଥିରେ ନିଜେ ପରିପୂର୍ଣ୍ଣ ନୁହନ୍ତି ବୋଲି, ମନେ କରନ୍ତି ଓ ଲୋକପ୍ରିୟ ହେବାକୁ ଉଦ୍ୟମ କରନ୍ତି ସେ ଯଶ, କୀର୍ତ୍ତି, ଶ୍ରୀ ଓ ପ୍ରଜା ଲାଭ କରିଥାଆନ୍ତି । ଯେଉଁ ରାଜା କୃପଣ, ସ୍ନେହହୀନ, ସାହସିକ ହୋଇ ମଧ୍ୟ ପ୍ରଜାମାନଙ୍କୁ ଉଚିତ ଦଣ୍ଡପ୍ରଦାନରେ ତ୍ରୁଟି କରନ୍ତି ସେ ବିନଷ୍ଟ ହୁଅନ୍ତି । ପାପାଚାରୀ ପୁରୁଷକୁ ଉପେକ୍ଷା କରି ତାର କର୍ମ ପ୍ରତି ଦୃଷ୍ଟି ନ ଦେଲେ ରାଜା ନିନ୍ଦା ପାନ୍ତି ଓ ନରକଗାମୀ ହୁଅନ୍ତି । ରାଜା ଦାତା, ସ୍ନେହଯୁକ୍ତ ଓ ସମସ୍ତଙ୍କର ସମ୍ମାନ କାରୀ ହେଲେ ତାଙ୍କର ବିପଦ ଉପସ୍ଥିତ ହେଲେ ସମସ୍ତେ ତାକୁ ନିଜର ବିପଦ ମନେ କରି ଦୂର କରିବାକୁ ଉଦ୍ୟମ କରନ୍ତି । ଯେଉଁ ରାଜାଙ୍କର ଧର୍ମୋପଦେଶ ଦେବାପାଇଁ ଗୁରୁ ନ ଥାନ୍ତି ଓ ଯେ ଅର୍ଥଲାଭ କରି ଧର୍ମବିଷୟକ ପ୍ରଶ୍ନର ଉତ୍ତର କାହାଠାରୁ ଶୁଣି ନ ଥାନ୍ତି ସେ ନଷ୍ଟପ୍ରାପ୍ତ ହୁଅନ୍ତି । ଅର୍ଥଲାଭ ପରେ ରାଜା ଧର୍ମ ପରତନ୍ତ୍ର ହେବା ଉଚିତ । ରାଜ୍ୟରେ ସର୍ବ ବଳବାନ ରାଜା । ସେ ଯଦି ଦୁର୍ବଳମାନଙ୍କ ପ୍ରତି ଅଧର୍ମ ଆଚରଣ କରନ୍ତି ଓ ଫଳରେ ଅନ୍ୟ ମନୁଷ୍ୟମାନେ ମଧ୍ୟ ତାଙ୍କର ମାର୍ଗ ଅନୁସରଣ କରନ୍ତି ସେ ରାଷ୍ଟ୍ର ଶୀଘ୍ର ନଷ୍ଟ ହୋଇଯାଏ । ରାଜା କ୍ଷତ୍ରିୟ ଧର୍ମ ଆଚରଣ ନ କଲେ ଧର୍ମଚ୍ୟୁତ ହୁଅନ୍ତି । ରାଜା ଯଦି ପୂର୍ବର ଅପକାର ନିମିତ୍ତ ସର୍ବଦା ଦ୍ୱେଷ ରଖନ୍ତି, ଯୁଦ୍ଧରେ ପରାଜିତ ବିରୁଦ୍ଧ ରାଜାଙ୍କୁ ଉପଯୁକ୍ତ ସମ୍ମାନ ଦେଖାନ୍ତି ନାହିଁ ସେ କ୍ଷତ୍ରୀୟ ଧର୍ମରୁ ଚ୍ୟୁତ ହୁଅନ୍ତି । ଆପତ୍ କାଳରେ ନିଜେ ସୁଖଭୋଗ କରିବାକୁ ସମର୍ଥ ଥାଇ ମଧ୍ୟ ଯଦି ପ୍ରଜାମାନଙ୍କର ଦୁଃଖ ସ୍ମରଣ

କରି ନିଜର ଭୋଗ ବିଳାସ ତ୍ୟାଗ କରନ୍ତି ସେ ପ୍ରଜାମାନଙ୍କର ପ୍ରିୟ ହୁଅନ୍ତି । ରାଜଲକ୍ଷ୍ମୀ ତାଙ୍କୁ କେବେ ପରିତ୍ୟାଗ କରି ନ ଥାଆନ୍ତି । ରାଜା ଯାହାଙ୍କର ଅନିଷ୍ଟ କରିବେ ପରେ ତାହାଙ୍କର ଇଷ୍ଟ ସାଧନ କଲେ, ସେ ଅନିଷ୍ଟକାରୀ ବ୍ୟକ୍ତି ଇଷ୍ଟ ଆଚରଣ କରି ରାଜାଙ୍କର ପ୍ରିୟ ହୋଇଥାଏ । ରାଜା ମିଥ୍ୟାବାକ୍ୟ ପରିତ୍ୟାଗ କରି ଅଯାଚିତ ଭାବରେ ଲୋକଙ୍କର ପ୍ରିୟ କାର୍ଯ୍ୟ କରିବେ । କାମ, କ୍ରୋଧ, ବା ଦ୍ୱେଷ ବଶତଃ ନିଜ ଧର୍ମପଥ କେବେ ଛାଡ଼ିବେ ନାହିଁ । ପ୍ରଶ୍ନର ଉତ୍ତର ନିଷ୍ଠୁର ଭାବରେ ଦେବେ ନାହିଁ । ଅଗମ୍ଭୀର ବାକ୍ୟ କହିବେ ନାହିଁ । ପ୍ରିୟ କାର୍ଯ୍ୟରେ ଅତିଶୟ ହୃଷ୍ଟ ଓ ଅପ୍ରିୟ କାର୍ଯ୍ୟ କଲେ ଦୁଃଖିତ ହେବେ ନାହିଁ । ପ୍ରଜାଙ୍କର ହିତ ସ୍ମରଣ କରି ଅତିଶୟ ଅର୍ଥରେ ସନ୍ତୁଷ୍ଟ ହେବେ ନାହିଁ । ଭୃତ୍ୟମାନଙ୍କୁ ନିଜରଅନୁଗତ କରି ରଖିବେ । ଜିତେନ୍ଦ୍ରିୟ, ଅନୁଗତ, ପବିତ୍ରଚିତ୍ତ, କାର୍ଯ୍ୟପ୍ରିୟ, ଫଳଦାନ-ସମର୍ଥ ପୁରୁଷଙ୍କୁ ରାଜା ଉଚ୍ଚ ମହତ କାର୍ଯ୍ୟରେ ଲଗାଇବେ । ଯେଉଁ ରାଜା ମୂଢ଼, ଇନ୍ଦ୍ରିୟାସକ୍ତ, ଲୋଭୀ, ଅନାର୍ଯ୍ୟପରି ଆଚରଣକାରୀ, ଶଠ, କପଟୀ, ହିଂସ୍ର, ଦୁର୍ବୁଦ୍ଧି, ଅନେକଶାସ୍ତ୍ରଜ୍ଞାନ ଉଚ୍ଚ ଭାବନା ରହିତ, ମଦ୍ୟପ, ଦ୍ୟୁତ, ସ୍ତ୍ରୀ ଓ ମୃଗୟା ଆସକ୍ତ, ମହତ କାର୍ଯ୍ୟରେ ପରତନ୍ତ୍ର ଭୃତ୍ୟଙ୍କୁ ନିଯୁକ୍ତ କରନ୍ତି ସେ ଶ୍ରୀଭ୍ରଷ୍ଟ ହୋଇ ଥାଆନ୍ତି । ଗୁପ୍ତଚର ଦ୍ୱାରା ରାଜା ନିଜର ଅଧିନସ୍ଥ ଭୂମିପତିମାନଙ୍କର ଆଚରଣ ପ୍ରତି ଲକ୍ଷ୍ୟ ରଖିବେ ।

ଯେଉଁ ରାଜା ବଳବାନ୍ ବ୍ୟକ୍ତିର ଅପକାର କରି, ପରେ ଆମ୍ଭେ ଦୂରରେ ଅଛୁ ସେ ଆମ୍ଭର କ୍ଷତି କରି ପାରିବେ ନାହିଁ ବୋଲି ନିଜକୁ ନିରାପଦ ମନେ କରନ୍ତି, ସେ ପ୍ରମାଦରେ ପଡନ୍ତି । ରାଜା ନିଜର ବଳର ସୀମା ଜାଣିଥିବା ଦରକାର । ନିଜଠାରୁ ବଳବାନ୍ ପ୍ରତି ଏହା ପ୍ରୟୋଗ କରିବେ ନାହିଁ । ଇହକାଳରେ ପ୍ରଜାଙ୍କୁ ସୁପାଳନ କଲେ ପରଲୋକରେ ଏହା କୁଶଳଜନକ ହୋଇଥାଏ । ଦୁର୍ଗମାନଙ୍କର ଦୃଢ଼ତ୍ୱ ସଂପାଦନ, ଯୁଦ୍ଧ, ଧର୍ମଅନୁଶାସନ, ମନ୍ତ୍ର ଚିନ୍ତା ଓ ପ୍ରଜାମାନଙ୍କୁ ସୁଖ ପ୍ରଦାନ ଏହି ପାଞ୍ଚଗୋଟି କର୍ମ ରାଜାଙ୍କ ଯଶ ବର୍ଦ୍ଧନ କରେ । ନିଜେ ରାଜା ଏହି ପାଞ୍ଚଗୋଟି କର୍ମ କରିବାକୁ ସକ୍ଷମ ନ ଥାଇ ପାଞ୍ଚଜଣ ସୁଯୋଗ୍ୟ ମନ୍ତ୍ରୀ ନିଯୁକ୍ତ କରି ସେମାନଙ୍କୁ କାର୍ଯ୍ୟଭାର ଦେବେ । ସେମାନଙ୍କର ଉପଦେଶ ବାକ୍ୟକୁ ଉପଯୁକ୍ତ ମର୍ଯ୍ୟାଦା ଦେବେ । ନିଗୃହୀତ ଅମାତ୍ୟ, ସ୍ତ୍ରୀ, ବିଷମ ଓ ଦୁର୍ଗମ ପର୍ବତ, ହସ୍ତୀ, ଅଶ୍ୱ ଓ ସରୀସୃପ ଏମାନଙ୍କୁ ଦୂରରେ ରଖି ରାଜା ଆତ୍ମ ରକ୍ଷା କରିବେ । ଦ୍ୱେଷ ବଶତଃ କେବେ, କଲ୍ୟାଣ ଗୁଣ ସଂପନ୍ନ ଜ୍ଞାତିମାନଙ୍କଠାରୁ ଦୂରରେ ରହିବେ ନାହିଁ । ଗୁଣବାନ୍ ବ୍ୟକ୍ତି ହୃଦୟରେ ଅପ୍ରିୟ ହେବା ପରି କଥା କହିଲେ ମଧ ତାଙ୍କୁ ପ୍ରିୟ ବାକ୍ୟ କହି ବଶୀଭୂତ କରିବେ । ଅଧିନସ୍ଥ କେଉଁ ସାମନ୍ତ ରାଜାମାନେ ସ୍ୱଭାବତଃ ଅନୁଗତ, କେଉଁମାନେ ଭୟବଶତଃ ଅନୁଗତ ଓ କେଉଁମାନେ ସଂପୂର୍ଣ୍ଣ ଦୋଷ ରହିତ ତାହା ଜାଣି ରଖିଥିବେ । ଦୁର୍ବଳ ଜାଣି ସୁଦ୍ଧା କାହା ପ୍ରତି ଉପେକ୍ଷା କରିବେ ନାହିଁ । ଛଞ୍ଚାଣ ସୁଯୋଗ ଦେଖି କ୍ଷୁଦ୍ର ପକ୍ଷୀକୁ ମାଡି ବସିବା ପରି ସେମାନେ ଅସାବଧାନ ମୁହୂର୍ତ୍ତରେ ଆକ୍ରମଣ କରି ପାରନ୍ତି । ନିଜର ବିଜୟ ବିନା ଯୁଦ୍ଧରେ, ବିନା ରକ୍ତପାତରେ ହାସଲ କରିବାକୁ ରାଜା ଉଦ୍ୟମ କରିବେ । ପଣ୍ଡିତମାନେ ଯୁଦ୍ଧଦ୍ୱାରା ବିଜୟକୁ ଜଘନ୍ୟ ବୋଲି

ବର୍ଣ୍ଣନା କରନ୍ତି । ମୂଳ ଅତିଶୟ ଦୃଢ଼ ନ ହେଲେ ସେ ଅଲଭ୍ୟ ବସ୍ତୁରେ ଲୋଭ କରିବେ ନାହିଁ । ପାଷାଣ୍ଡ (ନାସ୍ତିକ), ଚଣ୍ଡାଳ (ମ୍ଳେଚ୍ଛ) ଶାସ୍ତ୍ରର ବିରୁଦ୍ଧ ଆଚରଣକାରୀ ବଳବାନ, ସବୁ ଆଶ୍ରମ ନିବାସୀ, ଗାୟକ ନର୍ତ୍ତକ-ଏ ସମସ୍ତଙ୍କୁ ଯତ୍ନକରି ବଶରେ ରଖିବା ରାଜାଙ୍କର କର୍ତ୍ତବ୍ୟ । ରାଜ୍ୟବାସୀ ଧନଧାନ୍ୟଶାଳୀ ଓ ସ୍ୱୟଂ ସହାୟକ ହେଲେ ରାଜାଙ୍କର ମୂଳ ଦୃଢ଼ୀଭୂତ ହୋଇଥାଏ । ଶ୍ରେଷ୍ଠ ଲୋକମାନଙ୍କ ପାଖରୁ ସମର୍ଥନ ମିଳୁନଥିବା କାର୍ଯ୍ୟ ରାଜା କରିବା ଅନୁଚିତ୍ । ଜନପଦ ଉନ୍ନତ ଓ ସମୃଦ୍ଧିଯୁକ୍ତ, ରାଜପ୍ରିୟ ସନ୍ତୁଷ୍ଟ ଓ ସଚିବସମନ୍ୱିତ ହେଲେ ରାଜାଙ୍କୁ ଦୃଢ଼ମୂଳ ବୋଲି ଗଣାଯିବ । ସୁ-ସନ୍ତୁଷ୍ଟ ଶୃଙ୍ଖଳିତ ନିଷ୍ଠାବାନ ଅଳ୍ପ ସୈନ୍ୟଥିଲେ ମଧ୍ୟ ରାଜା ବିଜୟ ଲାଭରେ ଯଶସ୍ୱୀ ହୋଇଥାଆନ୍ତି । ଜନପଦବାସୀ ଲୋକମାନେ ଦୟାଳୁ, ଧନଶାଳୀ, ଧାନ୍ୟଯୁକ୍ତ ହେଲେ ରାଜା ଦୃଢ଼ମୂଳ ହୋଇଥାଆନ୍ତି । ନିଜ ବଳକୁ ଅତି ବେଶି ବିବେଚନା କଲେ ରାଜା ପରଧନ ଓ ପରଭୂମିକୁ ଲୋଭ କରନ୍ତି । ସୁଖ ଭୋଗରେ ଉଦାସୀନ, ସର୍ବଭୂତରେ ଦୟା, ତ୍ୱରାବାନ୍, ଆତ୍ମରକ୍ଷାରେ ସମର୍ଥ ରାଜାଙ୍କର ବିଷୟ ବର୍ଦ୍ଧିତ ହୁଏ । ଅକ୍ରୋଧୀ ରାଜାର କେହି ଦ୍ୱେଷ କରନ୍ତି ନାହିଁ । ଅନାର୍ଯ୍ୟୋଚିତ କର୍ମ ରାଜା କରିବେ ନାହିଁ । ରାଜା ଯଦି ନିଜର ଧର୍ମାନୁଚରିତ ନିର୍ଦ୍ଧାରିତ କର୍ମ କରନ୍ତି ସେ ସୁଖଭୋଗ କରିଥାଆନ୍ତି । କେହି ତାଙ୍କୁ ଅବଜ୍ଞା କରି ନ ଥାଏ । ବାମଦେବଙ୍କର ଉପଦେଶ ଶୁଣାଇ ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଲେ ତୁମେ ଯଦି ଏହି ପ୍ରକାର ଆଚରଣ କର, ତେବେ ଇହଲୋକ ଓ ପରଲୋକ ଉଭୟ ଜୟ କରିପାରିବା ସୁନିଶ୍ଚିତ ।



ଭଗବାନଙ୍କର ଶ୍ରୀମୁଖପଦ୍ମ ବିଗଳିତ ବଚନରୁ ଜଣାଯାଏ ଯେ, କାୟମନୋବାକ୍ୟରେ ଭଗବଦ୍ ଶରଣାଗତିହିଁ ଜୀବର ପ୍ରକୃତ ଧର୍ମ ବା ସ୍ୱଧର୍ମ ।

ଧର୍ମ କେବଳ ମନୁଷ୍ୟ ପାଇଁ । ଗାଈ ପାଇଁ ନୁହଁ, କିମ୍ୱା କୁକୁର ପାଇଁ ନୁହଁ, କି ଛେଳି ମେଣ୍ଢା ପାଇଁ ନୁହଁ । ସେମାନଙ୍କର ଧର୍ମ ଅଛି । କିନ୍ତୁ ମନୁଷ୍ୟର ଧର୍ମ ଅନ୍ୟ ପ୍ରକାରର । ଆହାର, ନିଦ୍ରା, ଭୟ, ମୈଥୁନ-ଜୀବନ ମାତ୍ରେ ଏ ଚାରିଟି ଗୁଣରେ ପରିପୂର୍ଣ୍ଣ । ମାତ୍ର ମନୁଷ୍ୟର ଧର୍ମ ହେଉଛି ଏ ଚାରିଟିକୁ ସଂଯତ କରି ତହିଁରୁ ଯେଉଁ ଶକ୍ତି ଲାଭ ହେବ ତଦ୍ୱାରା ଅନନ୍ତ, ଅସୀମ ଓ ଅବିନଶ୍ୱର ଈଶ୍ୱରଙ୍କର ଅନୁସନ୍ଧାନ କରିବା ।

*ବାୟାବାଣୀ....*

# ଋଷଭ ଗୀତା

*(ଯୁଧିଷ୍ଠିରଙ୍କର ଶାସ୍ତ୍ର ବିଷୟକ ପ୍ରଶ୍ନର ଉତ୍ତରରେ ଭୀଷ୍ମଙ୍କର ରାଜା ସୁମିତ୍ର ଓ ଋଷଭ ଋଷିଙ୍କର ବୀରଦ୍ୟୁମ୍ନ ଓ ତନୁ ଋଷିଙ୍କର ବୃତ୍ତାନ୍ତ ବର୍ଣ୍ଣନା-ଆଶା ତ୍ୟାଗର ସୂଚନ)*

ଭୀଷ୍ମ ଶୀଳବାନ ମନୁଷ୍ୟର ଆଚରଣ ବର୍ଣ୍ଣନା କରିବା ପରେ ଯୁଧିଷ୍ଠିର ତାଙ୍କୁ ପଚାରିଲେ ଶୀଳ ମନୁଷ୍ୟ ପକ୍ଷରେ ପ୍ରଧାନ ଗୁଣ ଏହା ଜାଣିଲି । କିନ୍ତୁ ଆଶା, କଣ ? ତାହା କିପରି ଜନ୍ମ ହୋଇଥାଏ, ତାକୁ କିଏ ନିୟନ୍ତ୍ରଣ କରେ ତାହା ମତେ ଶୁଣାନ୍ତୁ । ଆଶା ବୃକ୍ଷଯୁକ୍ତ ପର୍ବତଠାରୁ ବଡ଼ ଓ ଆକାଶ ଅପେକ୍ଷା ଅପ୍ରମେୟ । ଆଶା ଅଚିନ୍ତ୍ୟ ଓ ପରମ ଦୁର୍ଲଭ ଅଟେ । ମୋର ଦୁର୍ଯ୍ୟୋଧନଠାରେ ଆଶା ଥିଲା ଯେ, ଯୁଦ୍ଧ ଅବସରରେ ସେ ଉଚିତ କାର୍ଯ୍ୟ କରିବ ଓ ମତେ ବିନା ଯୁଦ୍ଧରେ ରାଜ୍ୟର ଅଧା ଫେରାଇବ । ଆଶା ଜିତିବା କଠିନ । ଏହାଠାରୁ ବଳିକରି ଦୁର୍ଲଭ ଆଉ କ'ଣ ଅଛି ।

ଉତ୍ତରରେ ଭୀଷ୍ମ ହେୟବଂଶର ରାଜା ଶ୍ରୀ ସୁମିତ୍ରଙ୍କର ଉପାଖ୍ୟାନ ତାଙ୍କୁ ଶୁଣାଇଲେ । ରାଜା ମୃଗୟା କରୁଥିଲେ । ଗୋଟିଏ ମୃଗକୁ ବାଣ ମାରିଲେ । ସେ ପଳାଇଲା । ତାର ପଛେ ପଛେ ରାଜା ଗୋଡ଼ାଇଲେ । ମୃଗ ନଦୀ ବଣ ପାରହୋଇ କେବେ ଦୂରରେ ପୁଣିକେବେ ପାଖରେ ଥାଏ । ଯୌବନର ଦୁର୍ଦ୍ଦମତା ବଶତଃ ଗୋଡ଼ାଇ ଗୋଡ଼ାଇ ରାଜା ଅରଣ୍ୟ ମଧରେ ପଥ ହରାଇଲେ । ବାରମ୍ବାର ଶର ପ୍ରୟୋଗକୁ ମୃଗ ଭ୍ରୂକ୍ଷେପ କଲାନାହିଁ । ମହାଅରଣ୍ୟ ମଧରେ ରାଜା ଜଣେ ତପସ୍ୱୀଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ଋଷିମାନେ ତାଙ୍କର ଯଥୋଚିତ ସତ୍‌କାର କଲେ । ରାଜାଙ୍କୁ ନିଜ ପରିଚୟ ପଚାରିଲେ । ରାଜା ପରିଚୟ ଦେଲେ । ସେ ବିପୁଳ ବଳଦ୍ୱାରା ପରିରକ୍ଷିତ, ଅମାତ୍ୟ ଓ ଅନ୍ତଃପୁରବାସିନୀମାନଙ୍କ ଦ୍ୱାରା ପରିବୃତ୍ତ । ସେ ସହସ୍ର ସହସ୍ର ମୃଗ ବଧ କରିଅଛନ୍ତି । ଯେଉଁ ମୃଗଟି ବର୍ତ୍ତମାନ ତାଙ୍କର ଶରବିଦ୍ଧ ହୋଇ ପଳାଇଯାଉଛି ତାକୁ ଖୋଜି ସେ ନଷ୍ଟଶ୍ରୀ, ହତାଶ ଓ ଶ୍ରମଶ୍ରାନ୍ତ । ମୃଗ ବିଷୟରେ ଆଶା ଯୋଗୁ ତାଙ୍କର ଦୁଃଖ ବଢ଼ିଅଛି । ତାଙ୍କର ଆଶାର ଅନ୍ତ ନାହିଁ । ଅତ୍ୟୁଚ୍ଚ ମହାଶୈଳ ହିମାଳୟ, ଅତି ବିଶାଳ ମହୋଦଧି ଓ ଆକାଶର ତୁଳନାରେ ଆଶା ଆହୁରି ଅଧିକ ଅନନ୍ତ । ସର୍ବଜ୍ଞ ତପୋଧନମାନଙ୍କୁ ରାଜା ସୁମିତ୍ର ପଚାରିଲେ ଆଶାବାନ ପୁରୁଷ ଓ ଅନନ୍ତ ଆକାଶ ଏହି ଉଭୟ ମଧରେ ସଂସାରରେ ମହତ୍ତ୍ୱ ଦୃଷ୍ଟିରୁ କିଏ ବଡ଼ । ସେହି ତାପସମାନଙ୍କ ମଧରେ ଋଷିସତ୍ତମ ବ୍ରହ୍ମର୍ଷିଋଷଭ ବିସ୍ମୟାପନ୍ନ ରାଜାଙ୍କୁ ତାଙ୍କ ପ୍ରଶ୍ନର ଉତ୍ତର ଦେଲେ । ସେ କହିଲେ ପୂର୍ବେ ସେ ତୀର୍ଥ ପର୍ଯ୍ୟଟନ କରିବା ସମୟରେ ବଦରିରେ ନରନାରାୟଣ ଆଶ୍ରମରେ ପହଞ୍ଚିଥିଲେ । ସେଠାରେ ବଦରି ଓ ଆକାଶ ଗଙ୍ଗା ମିଳିତ ହୋଇ ଏକ (ବିହାୟସ କୁଣ୍ଡ) ହ୍ରଦ ହୋଇଛି । ସେଠାରେ ଅଶ୍ୱଶୀରା ଋଷି ସନାତନ ବେଦ ପାଠ କରୁଥାଆନ୍ତି । ଋଷି ସ୍ନାନ ତର୍ପଣ କରି ନରନାରାୟଣ

ଯେଉଁଠାରେ ଅବସ୍ଥାନ କରୁଥିଲେ ତାର ନିକଟରେ ଗୋଟିଏ ଆଶ୍ରମକୁ ଗଲେ । ସେଠାରେ ସେ ତନୁ ନାମକ ଋଷିଙ୍କୁ ଦେଖିଲେ । ସେ ଉଚ୍ଚ ଓ କୃଶ ଥିଲେ । ତାଙ୍କ ଶରୀରର ଉଚ୍ଚତା ଅନ୍ୟ ମନୁଷ୍ୟମାନଙ୍କର ଆଠଗୁଣ ଥିଲେ ମଧ୍ୟ ତାଙ୍କର ଶରୀରର କୃଶତା କନିଷ୍ଠ ଅଙ୍ଗୁଳି ଭଳି ଥିଲା । ଋଷଭ ଋଷି ତାଙ୍କୁ ଦେଖି ଅତିଶୟ ଭୀତ ହେଲେ । ତାଙ୍କୁ ଅଭିବାଦନ କରି ତାଙ୍କ ଆଗରେ ବସିଲେ । ନିଜ ନାମ, ଗୋତ୍ର, ପିତୃ ପରିଚୟ ତାଙ୍କୁ ଦେଲେ । ତନୁ ଋଷି ଧର୍ମକଥା କହିବାକୁ ଆରମ୍ଭ କରିବା ସମୟରେ ଜଣେ ରାଜା ବୀରଦ୍ୟୁମ୍ନ ନିଜ ସୈନ୍ୟବଳ ଓ ଅନ୍ତଃପୁରଚାରିଣୀମାନଙ୍କ ସହିତ ତାଙ୍କ ପାଖରେ ଆସି ପହଞ୍ଚିଲେ । ସେ ରାଜାଙ୍କର ପୁତ୍ର ଭୂରିଦ୍ୟୁମ୍ନ ହଜି ଯାଇଥିଲା ଓ ତାକୁ ସେ ସେଠାରେ ପାଇବେ ବୋଲି ଆଶା କରି ଆଶ୍ରମକୁ ଆସିଥିଲେ । ସେ କହିଲେ ତାଙ୍କର ନିଖୋଜ ବାଳକ ପୁତ୍ରକୁ ପାଇବା ଦୁର୍ଲଭ ହେଲେ ମଧ ତାକୁ ଦେଖିବା ନିମିତ୍ତ ତାଙ୍କର ମହତ ଆଶା ହୋଇଅଛି ଓ ସେଥିଯୋଗୁ ସେ କ୍ଳେଶ ପାଉଅଛନ୍ତି । ରାଜା ତାଙ୍କୁ ପଚାରିଲେ ଦୁର୍ଲଭ କ'ଣ ଓ ଆଶା ଅପେକ୍ଷା ମହତ କ'ଣ । ମୁନି କହିଲେ ତୁମ୍ଭର ପୁତ୍ରକୁ ଜଣେ ମହାଋଷି ଗୋଟିଏ କାଞ୍ଚନପୂର୍ଣ୍ଣ କଳସ ଓ ବଲ୍କଳ ମାଗିଥିଲେ । ପୁତ୍ର ଦେବାକୁ ସକ୍ଷମ ଥାଇ ମଧ ତାହା ଅବଜ୍ଞା ବଶତଃ ଦେଇନଥିଲେ । ସେହି ପାପରୁ ସେ ନିଖୋଜ ହୋଇ ଯାଇଅଛନ୍ତି ।

ଋଷଭମୁନି ଶୁଣାଇଲେ ହେ ରାଜା ସୁତନୁ ଋଷିଙ୍କଠାରୁ ଏହା ଶୁଣି ସେହିଲୋକ ମହର୍ଷିଙ୍କୁ ପ୍ରଣାମ କରି ଧର୍ମାତ୍ମା ରାଜା ବୀରଦ୍ୟୁମ୍ନ ତୁମ୍ଭରି ପରି ଶିଥିଳ ହୋଇଗଲେ । ସେ କହିଲେ ମୁଁ ମୋର ହଜିଥିବା ପୁତ୍ର ଭୂରିଦ୍ୟୁମ୍ନକୁ ଖୋଜିବାକୁ ବଣକୁ ଆସିଥିଲି । ସେ ମୋର ଏକମାତ୍ର ପୁତ୍ର ଥିଲା ଓ ବାଳକ ସ୍ୱଭାବର ଥିଲା । ରାଜା ଏହିପରି କହିବାରୁ ମହର୍ଷି ତନୁ ମୁହଁ ତଳକୁ କରି ଚୁପଚାପ ବସିଗଲେ । ପୂର୍ବରୁ କୌଣସି ରାଜା ସେହି ଋଷିଙ୍କୁ ଅନାଦର କରି ତାଙ୍କର ଆଶା ଭଙ୍ଗ କରିଥିଲା । ତେଣୁ ଋଷି ପ୍ରତିଜ୍ଞା କରିଥିଲେ ମୁଁ କୌଣସି ରାଜା ବା ଅନ୍ୟ କାହାର କୌଣସି ପ୍ରକାର ଦାନ ଗ୍ରହଣ କରିବି ନାହିଁ ଓ ତାପରେ ସେ ଦୀର୍ଘଦିନ ଧରି ତପସ୍ୟାରେ ଲାଗିଥିଲେ । 'ଆଶା' ବହୁତ ଦିନ ରହିଲେ ମୂର୍ଖ ମନୁଷ୍ୟକୁ ଉଦ୍ୟମଶୀଳ କରିଥାଏ । ଏହା ମନରେ ରଖି 'ମୁଁ ଏହି ଆଶା ମନରୁ ଦୂର କରିବି' ଏହି ଲକ୍ଷ୍ୟରେ ସେ ତପସ୍ୟା କଲେ । ରାଜା ପୁଣି ପଚାରିଲେ ହେ ବିପ୍ରବର, ଆପଣ ଧର୍ମ ଓ ଅର୍ଥ ଜାଣିଛନ୍ତି, ତେଣୁ ମୋତେ କହିଦିଅନ୍ତୁ ଆଶାଠାରୁ ବଳି କରି ଦୁର୍ବଳତା କ'ଣ ଅଛି ଏବଂ ଏହି ପୃଥିବୀରେ ସବୁଠାରୁ ଦୁର୍ଲଭ କ'ଣ ? ଉତ୍ତରରେ ଋଷି କହିଲେ ହେ ରାଜା 'ଆଶା' ଓ 'ଆଶାବାନ'ର ଦୁର୍ବଳତାଠାରୁ ବଳି ଆଉ କୌଣସି ଦୁର୍ବଳତା ନାହିଁ । ମୋର ସେହି ଦୁର୍ବଳତା ହେତୁରୁ ମୁଁ ବହୁତ ରାଜାମାନଙ୍କ ପାଖରେ ମାଗି ବୁଲୁଥିଲି । ରାଜା କହିଲେ ଆପଣଙ୍କ କଥାରୁ ମୁଁ ଏତିକି ଜାଣୁଛି ଯେ ଯେଉଁ ବ୍ୟକ୍ତି ଆଶାରେ ବନ୍ଧା ହୋଇଛି ସେ ଦୁର୍ବଳ । ଆଶାକୁ ଜିତିଥିବା ପୁରୁଷ ବଳବାନ । ମୁଁ ଆପଣଙ୍କ କଥାରୁ ବେଦ ବାକ୍ୟ ପରି ଏହି ସତ୍ୟ ଗ୍ରହଣ କରୁଛି ଯେ ଯେଉଁ ବସ୍ତୁକୁ ମନୁଷ୍ୟ ଆଶା କରିଥାଏ ତାହା ତା' ପକ୍ଷରେ ଅତ୍ୟନ୍ତ ଦୁର୍ଲଭ ହୋଇଥାଏ । ହେ ମହାମୁନି ଯଦି

ଗୋପନୀୟ ନୁହେଁ ତାହାହେଲେ ଆପଣଙ୍କଠାରୁ ବଳି ଦୁର୍ବଳ ବସ୍ତୁ ଆଉ କଣ ଅଛି ତାହା ମୋତେ ଜଣାଇ ଦିଅନ୍ତୁ । ଏହି ପ୍ରଶ୍ନର ଉତ୍ତରରେ ସେହି ଦୁର୍ବଳ ଶରୀର ଋଷି କହିଲେ ଆବଶ୍ୟକତା ଥିଲେ ଯେଉଁ ବ୍ୟକ୍ତି ଧୈର୍ଯ୍ୟ ଧରି ସେହି ବସ୍ତୁ ପାଇଁ କାହାକୁ ପ୍ରାର୍ଥନା କରେ ନାହିଁ ସେହିପରି ବ୍ୟକ୍ତି ସବୁଠାରୁ ଦୁର୍ଲଭ । ପୁଣି ଯେଉଁ ବ୍ୟକ୍ତି ମାଗୁଥିବା ମଣିଷକୁ ଅବହେଳା ନକରି ଆଦର ସହିତ ତାର ଇଚ୍ଛା ପୂର୍ଣ୍ଣ କରେ ସେପରି ବ୍ୟକ୍ତି ସଂସାରରେ ଅତ୍ୟନ୍ତ ଦୁର୍ଲଭ । ଯଥୋଚିତ ସତକାର କରି ଆଶା ଦେଇ ଯଦି ଜଣେ ବ୍ୟକ୍ତି ଯଥାଶକ୍ତି ଉପକାର କରେ ନାହିଁ, ସେହି ପରିସ୍ଥିତିରେ ସବୁ ପ୍ରାଣୀଙ୍କର ମନରେ ଯେଉଁ ଆଶା ହୁଏ ତାହା ମୋଠାରୁ ମଧ କୃଶ ହୋଇଥାଏ । କୃତଘ୍ନ, ନୃଶଂସ, ଅଳସୁଆ, ଅନ୍ୟମାନଙ୍କୁ କଷ୍ଟ ଦେଉଥିବା ପୁରୁଷଠାରେ ଯେଉଁ ଆଶା ରଖାଯାଇଥାଏ ତାହା କୌଣସି ସମୟରେ ପୂର୍ଣ୍ଣ ହୋଇ ନଥାଏ । ସେହି କାରଣରୁ ସେହି ଆଶା ମୋଠାରୁ ମଧ କୃଶ ହୁଏ । ଏହି କାରଣରୁ ହଜିଯାଇଥିବା ପୁତ୍ରକୁ ଖୋଜି ଖୋଜି ନ ପାଇ ବାପର ମନରେ ଯେଉଁ ଆଶା ରହେ ତାହା ମୋଠାରୁ ମଧ କୃଶ । ବୃଦ୍ଧାବସ୍ଥାରେ ସ୍ତ୍ରୀମାନଙ୍କର ସନ୍ତାନ ଉତ୍ପାଦନ ଆଶା, ଧନୀ ମନରେ ଅଧିକ ଧନ ଅର୍ଜନର ଆଶା ମଧ ରହିଥାଏ । ଏ ସବୁ ମୋଠାରୁ ମଧ କୃଶ । କନ୍ୟାର ଯୌବନାବସ୍ଥା ଆସିଲେ ତାର ବିବାହର ଚର୍ଚ୍ଚା ହୁଏ । ଏହା ଶୁଣି ସେ କନ୍ୟା ମନରେ ବିବାହ ଇଚ୍ଛା ହୋଇଥାଏ । ତାର ସେହି ଆଶା ମୋଠାରୁ ମଧ କୃଶ ଅଟେ । ସେହି ଋଷିଶ୍ରେଷ୍ଠଙ୍କର ବାଣୀ ଶୁଣି ରାଣୀମାନଙ୍କ ସହିତ ରାଜା ବୀରଦ୍ୟୁମ୍ନ ତାଙ୍କ ପାଦରେ ପଡିଗଲେ । ସେ କହିଲେ 'ଭଗବନ୍, ମୋର ପୁତ୍ର ସହିତ ମିଳନର ଇଚ୍ଛା ପ୍ରବଳ ହେଉଅଛି ଅଥଚ ଏହି ସମୟରେ ଆପଣ ଯେଉଁ ଉପଦେଶ ଦେଲେ ତାହା ନିଃସନ୍ଦେହରେ ସତ୍ୟ ଅଟେ । ମହର୍ଷି ତନୁ ଏହା ଶୁଣି ହସି ନିଜର ତପସ୍ୟା ଓ ଶାସ୍ତ୍ରଜ୍ଞାନ ପ୍ରଭାବରେ ରାଜକୁମାରଙ୍କୁ ସେଠାକୁ ଆଣି ଦେଲେ । ସେ ଧର୍ମାତ୍ମା ଶ୍ରେଷ୍ଠ ତନୁମୁନି ଦିବ୍ୟ ଓ ଅଦ୍ଭୁତ ଦେଖା ଯାଉଥିଲେ । ସେ ନିଜର ସାକ୍ଷାତ ଧର୍ମ ସ୍ୱରୂପର ଦର୍ଶନ ଦେଲେ । ତା ପରେ ସେହି କ୍ରୋଧ ରହିତ ନିଷ୍ପାପ ମୁନି ନିକଟବର୍ତ୍ତୀ ଅରଣ୍ୟକୁ ଚାଲିଗଲେ । ଆଶାକୁ ଅତ୍ୟନ୍ତ କୃଶ କହିବାର ଅର୍ଥ ହେଲା ଏହି ଆଶା ସବୁବେଳେ ମନୁଷ୍ୟକୁ କୃଶ ଅର୍ଥାତ୍ ଦୁର୍ବଳ କରିଥାଏ ।

ପିତାମହ ଭୀଷ୍ମ କହିଲେ ହେ ରାଜା ଯୁଧିଷ୍ଠିର ମହାତ୍ମା ଋଷଭ ଏହି ପରି କହିବାରୁ ସୁମିତ୍ର ତାଙ୍କ ଶରୀରକୁ ଅତ୍ୟନ୍ତ ଦୁର୍ବଳ କରୁଥିବା ଆଶା ତୁରନ୍ତ ତ୍ୟାଗ କଲେ । ଏହି ଉପାଖ୍ୟାନ ଶୁଣି ତୁମେ ମଧ ଆଶା ପରିତ୍ୟାଗ କର ଓ ହିମାଳୟ ସମାନ ସ୍ଥିରମତି ହୁଅ । ଦୁର୍ଯ୍ୟୋଧନ ସହିତ ଆଶା କରାଯାଉଥିବା ସନ୍ଧି ହୋଇପାରିଲା ନାହିଁ ଓ ଯୁଦ୍ଧ ଉପେକ୍ଷା କରି ହେଲା ନାହିଁ ବୋଲି ତୁମ୍ଭ ମନରେ ଆଉ ସନ୍ତାପ ଆସିବା ଉଚିତ ନୁହେଁ ।

●

# ବ୍ରହ୍ମଗୀତାଗାଥା

*ଅତ୍ରଗାଥା ବ୍ରହ୍ମଗୀତା କୀର୍ତ୍ତୟନ୍ତି ପୁରାବିଦଃ ।*

*(ରାଜା କାହାଠାରୁ ଧନ ନେବେ, କାହାଠାରୁ ନେବେ ନାହିଁ ଓ ଏ ସଂପର୍କରେ କିପରି ଆଚରଣ କରିବେ ତହିଁର ବିଚାର )*

ଶାନ୍ତି ପର୍ବର ୧୩୬ ଅଧ୍ୟାୟରେ ପିତାମହ ଭୀଷ୍ମ ଯୁଧିଷ୍ଠିରଙ୍କୁ ଯେଉଁ ଉପାୟ ଦ୍ୱାରା କୋଷ ସଞ୍ଚୟ କରାଯାଏ ବ୍ରହ୍ମାଙ୍କ କଥିତ ଏହି ଗାଥା ବର୍ଣ୍ଣନ କରିଅଛନ୍ତି । ଏହା ବ୍ରହ୍ମଗୀତା ଗାଥା ନାମରେ ପରିଚିତ । ଧନ ସଂଗ୍ରହ ବ୍ୟାପାରରେ ରାଜା ବିଚାର ବୁଦ୍ଧି ପ୍ରୟୋଗ କରିବେ । ଯଜ୍ଞଯାଜୀ ଋଷିମାନଙ୍କର ଧନ ଓ ଦେବସ୍ୱ ରାଜା ଗ୍ରହଣ କରିବେ ନାହିଁ । ଦସ୍ୟୁ ଓ କ୍ରିୟାହୀନ ଲୋକଙ୍କର ଧନ ରାଜା ହରଣ କରିନେବା ଉଚିତ । କ୍ଷତ୍ରିୟର ପ୍ରଜାପାଳନ କରି ରାଜ୍ୟଭୋଗ କରିବା ନିର୍ଦ୍ଦେଶ ଅଛି ତେଣୁ ସମସ୍ତ ଧନ କ୍ଷତ୍ରିୟ ରାଜାର ଧନ । ଧନ ରାଜାଙ୍କର ବଳ । ତାହାକୁ ସେ ନିଜ ବଳବର୍ଦ୍ଧନ ଓ ଯଜ୍ଞରେ ବ୍ୟୟ କରି ପ୍ରଜାପାଳନ କରିବେ । ଅଭୋଗ୍ୟ ଅଖାଦ୍ୟ ଔଷଧ ବୃକ୍ଷମାନଙ୍କୁ ଉପାଡ଼ି ଔଷଧୀୟ ବୃକ୍ଷ ପକାଇ ରଖିବା ପରି ରାଜା ଅସାଧୁମାନଙ୍କୁ ହିଂସା କରିବେ ମାତ୍ର ସାଧୁବ୍ୟକ୍ତି ମାନଙ୍କୁ ପାଳନ କରିବେ । ବ୍ୟକ୍ତି ଦେବତା ପିତୃଗଣ ଓ ଅନ୍ୟ ମନୁଷ୍ୟଙ୍କୁ ଉପଯୁକ୍ତ ଦ୍ରବ୍ୟ ଦ୍ୱାରା ଅର୍ଚ୍ଚନା କରିବେ । ଏହି ଉଦ୍ଦେଶ୍ୟରେ ଧନ ବ୍ୟୟ ନହେଲେ ସେ ବ୍ୟକ୍ତିର ଧନକୁ ଅନର୍ଥକ କୁହାଯାଏ । ଧାର୍ମିକ ରାଜା ନିଜ ଆୟକୁ ପ୍ରଜାଙ୍କର ମଙ୍ଗଳ ନିମିତ୍ତ ବ୍ୟୟ କରି ସେମାନଙ୍କୁ ଆନନ୍ଦିତ କରି ରଖିବେ । ଅସାଧୁ ବ୍ୟକ୍ତିଠାରୁ ଆଦାୟ ଧନ ରାଜା ନିଜ ରାଜକୋଷ ବୃଦ୍ଧିରେ ନିୟୋଗ କରିବେ ନାହିଁ । ନିଜ ଶକ୍ତି ଧନବଳରେ ବୃଦ୍ଧି କରି ସମତୁଲ୍ୟ ପରବଳ ଜୟ କରିବେ । ଉଦ୍ଭିଦମାନେ ନିଜ ଶକ୍ତି ଅନୁସାରେ ବଢ଼ି ଥାଆନ୍ତି । ବଜ୍ରକୀଟ (ତୀକ୍ଷ୍ଣଦନ୍ତଯୁକ୍ତ କୀଟ) ଆଦି କ୍ଷୁଦ୍ର ଜୀବ ବିନା କାରଣରେ ଉତ୍ପନ୍ନ ହୋଇଥାଆନ୍ତି । ଏହିପରି ବିନା କାରଣରେ ଯଜ୍ଞହୀନ କର୍ତ୍ତବ୍ୟ ବିରୋଧୀ ମନୁଷ୍ୟ ରାଜ୍ୟରେ ସୃଷ୍ଟି ହୋଇଥାନ୍ତି । ଗୋରୁ ଗାଈଙ୍କ ଦେହରୁ ମଶା, ଡାଆଁଶ ଏବଂ ଟିଙ୍କ ଆଦି ଯେପରି କାଢ଼ି ଫୋପାଡ଼ିଦେଇ ପଶୁରକ୍ଷା କରାଯାଏ, ଏହି ଅଯାଜ୍ଞିକ ଯଜ୍ଞ ବିରୋଧୀମାନଙ୍କ ପ୍ରତି ସେହିପରି ବ୍ୟବହାର କରି ରାଜା ସମାଜ ସେବା କରିବେ । ସେମାନଙ୍କୁ ରାଜ୍ୟରୁ ବିତାଡ଼ିତ କରିବାରେ ରାଜା ଦ୍ୱିଧା କରିବେ ନାହିଁ । ରାସ୍ତା ଉପରେ ପାଉଁଶ ପଡ଼ିଥାଏ । ପଥରରେ ତାହା କାଳକ୍ରମେ ପେଷିହୋଇ ଅତି ସୂକ୍ଷ୍ମ ଓ ସୂକ୍ଷ୍ମତର ହୁଏ । ରାଜାଙ୍କର ଧର୍ମ ସେମିତି ସମାଜରେ କାଳକ୍ରମେ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଥାଏ ।

ବଳ, ମନ୍ତ୍ର, କୋଷ ସଞ୍ଚୟକୁ ଯେ ନିତି
କରିଲେ ସୁଖ ପାଏ ଜାଣ ନରପତି ।।

କୋଷର ବଳ ମୂଳ, ବଳ ମୂଳ କୋଷ
ମୋ କହିବାରୁ ଜାଣ ପାଣ୍ଡବ ନରେଶ ।।

ଅଧନ ହେଲେ ରାଜା ଦୁର୍ବଳ ବୋଲାଏ
ଧନ ଥିଲେ ବଳିୟାର ହୁଅଇ ରାୟେ ।।

ଏ ସକାଶୁଁ ସବୁ ପ୍ରକାରେ ଧର୍ମ କରି
ଧନ ରଖିଥିବ ଯେ ହେବ ଦଣ୍ଡଧାରୀ ।।



ମନୁଷ୍ୟ ଯେଉଁ କାମ କରୁଛି ତା ନିଜ ଇଛାରେ କରୁଛି, ନା ଭଗବାନଙ୍କ ଇଙ୍ଗିତରେ କରୁଛି ?

ବାବା-ଜୀବ ମାତ୍ରେ ପ୍ରକୃତି ବଶ ହୋଇ କର୍ମକରେ । ବାଘ ଯଦି ହରିଣଟିଏ ଦେଖିବ, ତେବେ ନିଶ୍ଚୟ ତାକୁ ଆକ୍ରମଣ କରିବ । କାରଣ ବ୍ୟାଘ୍ରର ପ୍ରକୃତି ହେଉଛି ହିଂସା । ଏଣୁ ଭଗବାନ ଗୀତାରେ କହିଛନ୍ତି-

''ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ
ଅହଂକାର ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ।''

ଅର୍ଥାତ୍ ସତ୍ତ୍ୱ, ରଜ ଓ ତମ ଏହି ତିନୋଟି ଗୁଣଦ୍ୱାରା ମନୁଷ୍ୟର ପ୍ରକୃତି ଗଠିତ । ସାତ୍ତ୍ୱିକ ଲୋକ ଧର୍ମାଚରଣ କରେ । ରାଜସିକ ଲୋକ ସଂପୂର୍ଣ୍ଣରୂପେ ସଂସାରରେ ମଜ୍ଜିଯାଇଥାଏ । ତାମସିକ ଲୋକ ଆଳସ୍ୟରେ ଜୀବନ ଯାପନ କରିଥାଏ । ଯେକୌଣସି କର୍ମକୁ ଆନାଲିସିସ୍ କର । ଦେଖିବାକୁ ପାଇବ ଏହି ତିନୋଟି ଗୁଣରୁ ଗୋଟିଏ ଗୁଣଦ୍ୱାରା ଉକ୍ତ କର୍ମର ଉଦ୍ଭବ ହୋଇଛି । ମନୁଷ୍ୟ ଯଦି ନିଜ ପ୍ରକୃତିର ସ୍ୱରୂପ ଉପଲବ୍ଧି କରେ ତେବେ ସେ ଆଉ ନିଜକୁ କର୍ତ୍ତା ବୋଲି କହିବ ନାହିଁ । ପ୍ରକୃତିକୁ ବଶ ନ କରିଥିବା ଲୋକ ଯେ କି ସବୁବେଳେ ସକ୍ରିୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଚାଳିତ ସେ କହେ - ''ମୁଁ କରୁଛି ।'' ସେଇଟା ଦେହ ଓ ଇନ୍ଦ୍ରିୟର ବଳରେ କହିଥାଏ । ପ୍ରକୃତରେ ସେ କିଛି କରୁନଥାଏ । କରୁଥାଏ ତାର 'ପ୍ରକୃତି' ।

*ବାପାବାଣୀ....*

# ଷଡଜ ଗୀତା

*(ଧର୍ମ, ଅର୍ଥ ତଥା କାମ ବିଷୟରେ ବିଦୁର ତଥା ପାଣ୍ଡବମାନଙ୍କର ପୃଥକ ପୃଥକ ବିଚାର ଓ ଶେଷରେ ଯୁଧିଷ୍ଠିରଙ୍କ ନିର୍ଣ୍ଣୟ)*

ଧର୍ମାତ୍ମା ବିଦୁରଙ୍କ ସହିତ ଏକତ୍ରିତ ହୋଇ ମହାରାଜ ଯୁଧିଷ୍ଠିର ନିଜ ଚାରିଭାଇଙ୍କୁ ଧର୍ମ, ଅର୍ଥ ଓ କାମ ଏହି ତିନି ବିଷୟରେ ଲୋଭ କରିବା ଉଚିତ କି ବୋଲି ପ୍ରଶ୍ନ କଲେ । ଏହି ତିନି ପଦାର୍ଥ ମଧ୍ୟରେ କିଏ ଶ୍ରେଷ୍ଠ ଓ କାମ, କ୍ରୋଧ, ଲୋଭ ଜୟ କରିବାକୁ କେଉଁ ବିଷୟରେ ମନ ଦେବା ଉଚିତ୍ ।

ପ୍ରଥମେ ଅର୍ଥତତ୍ତ୍ୱଜ୍ଞ ପ୍ରଜ୍ଞାବାନ ବିଦୁର କହିଲେ :-

ବିଦୁର ବୋଇଲେ ହେ ସତ୍ୟ, ଶମ, ତ୍ୟାଗ	ଶ୍ରଦ୍ଧା, କ୍ଷମାଭାବ, ବିଶୁଦ୍ଧ ଦ୍ୟା ଯାଗ,
ସଂଯମକୁ ମିଶି ଏ ଧର୍ମର ସଂପତ୍ତି	ବ ତ୍ରାନ୍ତି ଜାଣ ଆହେ ପାଣ୍ଡବ ସନ୍ତତି ।

ଧର୍ମ ଅର୍ଥ ଦୁଇ ଏହାଙ୍କ ଘେନି ହୋଏ	ମୋ କହିବାର ଏହା ଜାଣ ଧର୍ମରାୟେ
ଧରମ ସକାଶରୁ ତିନି ଲୋକ ଭଲ	ବୋଲାଇ ହେଉଅଛି ମଧ୍ୟ ଲୋକପାଳ ।

ଧର୍ମକୁ ପ୍ରତି ଅର୍ଥ ଅଟଇଟି ଊଣା	ଅର୍ଥକୁ ପ୍ରତି ସେହି ରୂପେଟି କାମନା
ଜାଣିବା ଲୋକ ଧର୍ମ ପ୍ରଧାନ ହୋଇବ	ଅର୍ଥ କାମନାକୁ ହେଳାରେ ବିଚାରିବ ।

ଅର୍ଥାତ୍ : ଏହି କେତୋଟି ଗୁଣ ଧର୍ମର ସଂପତ୍ତି । ଧର୍ମ ସର୍ବଗୁଣ ମଧ୍ୟରେ ଶ୍ରେଷ୍ଠ । ଅର୍ଥ ମଧ୍ୟମ ଓ କାମ କନିଷ୍ଠ ।

ଏହା ପରେ ଅର୍ଜୁନ କହିଲେ :

ଅର୍ଜୁନ ବୋଇଲେ ଗୋରକ୍ଷା, କୃଷି, ଶିଳ୍ପ	ବଣିଜଟି ଅର୍ଥ ବୋଲାଏ ଜାଣ ନୃପ
ଅର୍ଥ ଥିଲେ ଧରମ କାମ ସିଦ୍ଧ ହୋଏ	ଅର୍ଥବନ୍ତ ଲୋକଙ୍କୁ ମାନନ୍ତି ସର୍ବିଏ ।

ଜଟା ଅଜିନକୁ ଧଇଲେ ହେଲେ ଜନ	ଅର୍ଥରେ ଦେଇଥାନ୍ତି ଅବିଛିନ୍ନେ ମନ
ଭୋଗେ ଭୃତ୍ୟ, ଦଣ୍ଡରେ ଶତ୍ରୁକୁ ଶାସନ	ଯେ କରିପାରେ ଅର୍ଥବାନଟି ସେ ଜାଣ ।

ଅର୍ଥାତ୍ : ଅର୍ଥ ବ୍ୟତୀତ ଧର୍ମ ଓ କାମ ଅବସ୍ଥାନ କରି ପାରନ୍ତି ନାହିଁ । ଅର୍ଥବାନ ଲୋକ ଭୃତ୍ୟମାନଙ୍କୁ ଭୋଗଦ୍ୱାରା, ଶତ୍ରୁମାନଙ୍କୁ ଦମନ ଦ୍ୱାରା ଶାସନ କରିଥାଏ ତେଣୁ ଅର୍ଥ ପ୍ରଧାନ ।

ନକୁଳ ସହଦେବ ଦୁହେଁ ଏକତ୍ର ଉତ୍ତର ଦେଲେ :-

ନକୁଳ ସହଦେବ ବୋଇଲେ ଧନ ଥିଲେ
ଅସାଧ ସାଧ ହୋଏ ଧରମ ତୁଲେ
ଧର୍ମ ଅର୍ଥ ଦୁହେଁ ଅମୃତ ମଧୁପରି
ଏହା କହିଅଛନ୍ତି ପଣ୍ଡିତେ ବିଚାରି ।
ଅରଥ ନ ଥିବାର ଲୋକର କାମନା
କେବେ ନୁହଁଇ ହେ ରାଜନ ମହାମନା
ଅର୍ଥ ଯେଉଁ ଲୋକ ସଂପାଦି ନ ପାରୁଛି
ଧର୍ମ ଜାଣ ଇଚ୍ଛାରେ ତାହାକୁ ଚରୁଛି ।
ଧର୍ମ ଅର୍ଥ କାମକୁ କ୍ରମରେ ମନୁଷ୍ୟ
କଲେ ଜଗତରେ ହୁଅଇଟି ପ୍ରକାଶ ।

ଅର୍ଥାତ : ଧର୍ମ ସଂଯୁକ୍ତ ଅର୍ଥ ଓ ଅର୍ଥ ସଂଯୁକ୍ତ ଧର୍ମ ଅମୃତ ତୁଲ୍ୟ । ନିଃସନ୍ଦେହରେ ଅର୍ଥ ପ୍ରାପ୍ତ ହେଲେ ମନୁଷ୍ୟ ଇହଲୋକରେ କାମନାର ଫଳ ଭୋଗ କରେ । ପ୍ରଥମତଃ ଧର୍ମ ଆଚରଣ କରିବ ତଦନନ୍ତର ଧର୍ମଯୁକ୍ତ ଅର୍ଥ ଉପାର୍ଜନ କରିବ । ପରେ କାମର ସେବା କରିବ । ଯାହାର ପ୍ରୟୋଜନ ସିଦ୍ଧ ହୋଇଛି ତା ପକ୍ଷରେ କାମ ଶ୍ରେଷ୍ଠ ଅଟେ ।

ଭାଇମାନଙ୍କ ମଧ୍ୟରୁ ଶେଷରେ ଭୀମ କହିଲେ :-

ଭୀମ ବୋଇଲେ ହେ ଅକାମୀ ନର ହେଲେ
ରଖି ନ ପାରେ ତାକୁ ଅର୍ଥ ଜାଣ ଭଲେ ।
ଧନହୀନ ଲୋକର ଧର୍ମ କରିବାର
ତପ କରି ବଡ କଷ୍ଟ ଏ ନର ବର ।

ଏହି ସକାଶରୁ ଯେ କାମନା କଥାଟି
କରୁଥିବ ଯେ ହେବ ଜାଣିବା ଜନଟି
କାମନାରୁ ବଡ ହୋଇ ଯେ ନରରାଣ
ଏ ସଂସାରରେ ନାହିଁ ବୋଲି ଜାଣ ।

ଶ୍ରଦ୍ଧା, ଦାନ, କ୍ରିୟା ଓ ଯାଗ, କାମନାର
ଦେହ ଅଟଇଟି ରାଜନ ମନେ କର
ବଣିକରୁ ଜ୍ୟୋତିଷ ଚାଷୀ କାମନାକୁ
ହୃଦୟ କରି କରୁଛନ୍ତି କରମକୁ ।

କାମରେ ଯୁକ୍ତ ହେବାରୁଟି ନରକୁଳ
ସମୁଦ୍ରର ଦ୍ରବ୍ୟ ଆଣନ୍ତି କରି ଠୁଳ
କାମକୁ ଆଶ୍ରେ କରି ଧର୍ମ ଅର୍ଥ ଦୁଇ
ମହୀରେ ପ୍ରବର୍ତ୍ତିଟି ଅଛି ନର ସାଇଁ ।

ଦଧିହାଣ୍ଡି ମଧ୍ୟେ ଲବଣି ଥିଲା ପରି
ଅର୍ଥ ଧର୍ମ ଦୁଇରେ କାମ ଦଣ୍ଡ ଧାରୀ
କାମ ହୀନ ହୋଇଣ ପୁରୁଷ ଜନମ
ହୋଇଛି ବୋଲି ଶୁଣାନାହିଁ ନରୋତ୍ତମ ।

ବେଶ କରି ଦ୍ରବ୍ୟସ୍ତିରିଙ୍କି ଧରି କୋଳେ
ବିହର ସୁଖେ ରାୟେ କାମରାଜ ଭୋଳେ
ମୋ ମତରେ ନାରୀ ସଙ୍ଗରୁ ବଡ କଥା
ଥିବା ପରି ଦିଶୁ ନାହିଁ ହେ ମହାରଥା ।

ତୁମ୍ଭେ କିଂପା କାମ ସୁଖକୁ ଛାଡିକରି
ଆନ ସୁଖ ଇଚ୍ଛା କରୁଛ ଦଣ୍ଡଧାରୀ
ଧର୍ମ ଅର୍ଥ କାମ ଏ ତିନିଙ୍କ ସମାନ
କରି ସେବା କର ରାଜନ ପ୍ରତିଦିନ ।

ଧର୍ମ ଅର୍ଥ କାମରୁ ଗୋଟିକେ ଆସକ୍ତି ଯେ ହୋଏ ଅଧମ ସେ ବୋଲାଏ ନୃପତି
ଧର୍ମ ଅର୍ଥ କାମକୁ ସମାନ ଆଦର କରିଥିବା ଲୋକ ଲୋକରେ ହୋଏ ବର ।

ଅର୍ଥାତ୍ : କାମନା ରହିତ ହେଲେ ମନୁଷ୍ୟ କୌଣସି କାର୍ଯ୍ୟ କରିନଥାଏ । ବଣିକ, କୃଷକ, ପଶୁପାଳକ , କାରିଗର, ଶିଳ୍ପକର, ଦେବ ପୂଜକ ସମସ୍ତେ କାମନା ଅନୁସାରେ କର୍ମରେ ପ୍ରବୃତ୍ତ ହୁଅନ୍ତି । କାମ ଧର୍ମ ଓ ଅର୍ଥର କାରଣ ଓ ଏହା ଧର୍ମ ଓ ଅର୍ଥର ସ୍ୱରୂପ । ଧର୍ମ, ଅର୍ଥ, କାମକୁ ସମାନ ଭାବରେ ସେବା କରିବା ଉଚିତ୍ । ମହାରାଜ ଆପଣ ସୁଚାରୁ ବେଶଭୂଷା ଦ୍ୱାରା, ମଦମତ୍ତ ସୁନ୍ଦରୀ ରମଣୀମାନଙ୍କ ସହିତ କାମନାନୁସାରେ କ୍ରୀଡା କରନ୍ତୁ ।

ସମସ୍ତଙ୍କର ମତାମତ ଶୁଣି ଯୁଧିଷ୍ଠିର ଆଲୋଚନାର ସାରାଂଶ କଲେ :-

ଯୁଧିଷ୍ଠିର ବୋଇଲେ ତୁମ୍ଭ କଥାଯାକ ଶୁଣି ହୁଦେ କଲି ବିବେକ ଅବିବେକ ।
ମୁଁ ଯାହା କହୁଅଛି ତୁମ୍ଭେ ତାହାଶୁଣ ମୋର କଥାରେ କିଛି ନୋହିଣ ବିଗୁଣ ।

ଧରମ, ଅର୍ଥ, କାମ ଛାଡି ଢେଳା ସୁନା ସମାନ ଯେ ଜାଣେ ସେ ଧାର୍ମିକେ ଗଣନା ।
ପ୍ରାଣୀମାନେ ଜନ୍ମ ମରଣେ ପୀଡା ପାଇ ମୋକ୍ଷକୁ ପ୍ରଶଂସନ୍ତି ଶୁଣିଥାଇ ଭାଇ ।

ସ୍ନେହେ ବଦ୍ଧ ହେବା ଲୋକର ନୋହେ ମୁକ୍ତି, କହିଛନ୍ତି ଏହା ସାବିତ୍ରୀ ଦେବୀପତି ।
ବୃଦ୍ଧମାନେ ମୋକ୍ଷରେ ହୁଅନ୍ତି ତତପର ଏହା ଜାଣି ପ୍ରିୟ ଅପ୍ରିୟ କର ଦୂର ।

ବିଧାତା ଯାହାକୁଟି ଯହିଁରେ ନିଯୁକ୍ତ କରିଛି ସେ ତାହା କରେ କାହାର ଆୟତ୍ତି ।
ଯେଉଁ କଥା ହେବାର ହୁଅଇ ସେ କଥା ଭାବିବାରେ ବିଷୟ ଅଟେ ସବୁ ବୃଥା ।

କେହି ଅର୍ଥ, କର୍ମରେ ଲଭି ନ ପାରଇ ଯା ଭାଗ୍ୟରେ ଯାହା ଅଛି ତାହାଟି ଘଟଇ
ଧରମ, ଅର୍ଥ, କାମ ତ୍ରିବର୍ଗ ବିହୀନ ହୋଇଲେ ହେଁ ଲୋକେ ଲଭନ୍ତି ବହୁ ଧନ ।

ଏଣୁ ଲୋକହିତ ନିମନ୍ତେ ସେ ବିଧାତା ଗୋପନରେ ରଖିଅଛନ୍ତି ଏ ବାରତା
ଏହା ଶୁଣି ଚାରିଭାଇ ସନ୍ତୁଷ୍ଟ ହୋଇଲେ ଯୁଧିଷ୍ଠିର ରାଜାଙ୍କୁ ସର୍ବେ ପ୍ରଶଂସିଲେ ।

ଅର୍ଥାତ୍ : ତୁମ୍ଭେମାନେ ଧର୍ମଶାସ୍ତ୍ର, ଶୁଣିଅଛ । ପ୍ରମାଣ ମାନ ଜାଣିଅଛ, ଏଥିରେ ସନ୍ଦେହ ନାହିଁ । ଯାହା କହିଛ ତାହା ନିଶ୍ଚିତ ବାକ୍ୟ ମାତ୍ର ଯେଉଁ ମନୁଷ୍ୟ ପାପ ପୁଣ୍ୟ ଧର୍ମ, ଅର୍ଥ ଏବଂ କାମରେ ଅନୁରତ ହୁଅନ୍ତି ସେ ଦୋଷହୀନ । ଯେଉଁ ବ୍ୟକ୍ତି ସୁନା ଓ ମାଟି କୁ ସମାନ ଜ୍ଞାନ କରିଥାନ୍ତି ସେ ଦୁଃଖ ସୁଖ ଓ କାମନାରୁ ମୁକ୍ତି ପାଇଥାନ୍ତି । ରାଗ, ଦ୍ୱେଷ-ଯୁକ୍ତ ଓ ସ୍ନେହବଦ୍ଧ ବ୍ୟକ୍ତିର ମୁକ୍ତି ହୁଏ ନାହିଁ । ପ୍ରିୟ ଅପ୍ରିୟ ବସ୍ତୁରେ ଆସକ୍ତ ହେବ ନାହିଁ । ମୋକ୍ଷ ସାଧନର ଏହି ଉତ୍କୃଷ୍ଟ ଉପାୟ ମନେ ରଖିବ । ବିଧାତା ନିଯୁକ୍ତ କର୍ମ ପୁରୁଷ କରୁଅଛି । ତାଙ୍କ ନିୟୋଜିତ କର୍ମରେ ଆମେ ଲାଗିବୁ ।

ବିଧାତା ବଳବାନ । କର୍ମ ଦ୍ୱାରା ଅପ୍ରାପ୍ତ ଅର୍ଥ ମିଳି ନଥାଏ; ଯାହା ଅବଶ୍ୟମ୍ଭାବୀ ତାହା ପ୍ରାପ୍ତ ହୁଏ । ଧର୍ମ, ଅର୍ଥ, କାମ ତ୍ରିବର୍ଗ ବିହୀନ ମଧ୍ୟ ଅର୍ଥଲାଭ କରେ ।

ଯୁଧିଷ୍ଠିରଙ୍କର ଉପଦେଶ ଶୁଣି ଭାଇମାନେ ଏହାକୁ ଅତିଶୟ, ପ୍ରଶଂସା କଲେ ଓ ଯୁଧିଷ୍ଠିର ମଧ୍ୟ ତାଙ୍କର ବାକ୍ୟରେ ସେମାନଙ୍କର ବିଶ୍ୱାସ ଦେଖି ଆନନ୍ଦିତ ହେଲେ । ଏହି ତ୍ରିବର୍ଗ ସମାଚାର ଷଡଜ ଗୀତା ନାମରେ ପରିଚିତ ।



ଧନ୍ୟ ଜୀବନ ଏ ଜଗତେ — ଯେ ପ୍ରାଣ ଧରେ ପ୍ରାଣୀ ହିତେ ।
ଧନ୍ୟ ଜୀବନ ଧନ୍ୟ ତାର — ଦୁର୍ଲଭ କର୍ମ ଏ ବେଭାର ।

ଆତ୍ମସୁଖ ନଛାଡିଲେ କିଛି କରିପାରିବା ନାହିଁ । ଆଗ ମନୁଷ୍ୟଠି ପ୍ରେମ ସାଧନ କର । କ୍ରମେ କ୍ରମେ ବଢ଼ି ବଢ଼ି ଭଗବାନଙ୍କ ପାଖକୁ ଚାଲିଯିବ । ତୁମ୍ଭେମାନେ ତ ଆଧି ଉପାଧି ଛାଡୁନାହିଁ । ତୈଲଙ୍ଗ ସ୍ୱାମୀ କହିଛନ୍ତି -

ମନୁଷ୍ୟ ସାଧନ ବଳରେ ଭଗବାନ ହୋଇପାରେ । ବୈଷ୍ଣବ ଶାସ୍ତ୍ର କହିଛି - ଭଗବାନ ଯାହା କରି ନପାରିବେ ଭକ୍ତ ତା କରିବ । ଲକ୍ଷ୍ମଣ ଯେତେବେଳେ ଯୁଦ୍ଧରେ ସଂଜ୍ଞାହୀନ ହୋଇ ପଡିଲେ, ଦରକାର ହେଲା ବିଶଲ୍ୟକରଣୀ । କେବଳ ଗନ୍ଧମାର୍ଦ୍ଦନ ପର୍ବତରେ ଅଛି ବୋଲି ବୈଦ୍ୟ କହିଲେ ।

ରାମଚନ୍ଦ୍ର ଭାବିଲେ - କାହିଁ ଗନ୍ଧମାର୍ଦ୍ଦନ ପର୍ବତ, କାହିଁ ଲଙ୍କାପୁରୀ ? ଏତ ଅତି ଅସମ୍ଭବ କଥା । ଏକଥା ଭାବି ଭାବି ମୁଣ୍ଡରେ ହାତ ଦେଇ କାନ୍ଦିଲେ । ହନୁମାନ ଶୁଣୁଥିଲା ସବୁ କଥା । ଡିଆଁଟାଏ ମାରିଆସି ବସିପଡିଲା ଶ୍ରୀରାମଙ୍କ ଆଗରେ । କହିଲା - ପ୍ରଭୁଙ୍କର ହୁକୁମ୍ ହେଲେ ମୁଁ ଯାଇ ନେଇ ଆସିବି । ପୁଣି ବୈଦ୍ୟ କହିଥାନ୍ତି ସୂର୍ଯ୍ୟୋଦୟ ପୂର୍ବରୁ ଆସି ପହଞ୍ଚିବା ଦରକାର । ଏଥିରୁ ଦେଖାଯାଏ ଭକ୍ତ ଯାହା କରିପାରେ ଭଗବାନ୍ ତାହା କରି ପାରନ୍ତି ନାହିଁ ।

*ବାଯାବାଣୀ....*

# ଶଂପାକ ଗୀତା

*ତ୍ୟାଗର ମହିମା ବିଷୟରେ ଶଂପାକ ବ୍ରାହ୍ମଣର ଉପଦେଶ ।*

ଯୁଧିଷ୍ଠିର ପିତାମହଙ୍କୁ ପଚାରିଲେ ଧନୀ ଓ ନିର୍ଦ୍ଧନ ବ୍ୟକ୍ତି ଉଭୟ ନିଜ ନିଜ ଧର୍ମ ପଥ ଆଶ୍ରୟ କରିଥାଆନ୍ତି । ସେମାନଙ୍କର ସୁଖ ଦୁଃଖ କିପରି ହୋଇଥାଏ ଏହା ବୁଝାଇ ଦିଅନ୍ତୁ । ଭୀଷ୍ମ କହିଲେ ଏ ବିଷୟରେ ଶାନ୍ତି ଓ ସୁଖଯୁକ୍ତ ମୁକ୍ତି ପଥାବଲମ୍ବୀ ଶମ୍ପାକ ବ୍ରାହ୍ମଣଙ୍କ ଇତିହାସ ମୁଁ ତୁମକୁ ଶୁଣାଉଅଛି । ନିଜର ଦୁଷ୍ଟାଭାର୍ଯ୍ୟାର କୁବଚନରେ ମର୍ମାହତ, ଦରିଦ୍ର, ଗୃହରୁ ବିତାଡ଼ିତ, ବସ୍ତ୍ର ବିହୀନ, କ୍ଷୁଧା ପୀଡ଼ିତ ହୋଇ ଆସି ସେ ମୋତେ ଯାହା କହିଥିଲେ ତୁମକୁ ମୁଁ ଶୁଣାଉଅଛି । ମନୁଷ୍ୟ ଇହଲୋକରେ ଜନ୍ମହେଲା ଦିନୁଁ ବିବିଧ ପ୍ରକାରର ସୁଖ ଦୁଃଖଭୋଗ କରେ । ଯେ ଏହା ଦୈବବିହିତ ମନେ କରି, ସୁଖରେ ବିଶେଷ ଆନନ୍ଦିତ ଓ ଦୁଃଖରେ ମ୍ରିୟମାଣ ହୁଏ ନାହିଁ ସେ ସୁଖ ପାଏ ।

ଶଂପାକ ମୋତେ କହିଲେ ତୁମେ କାମନା ରହିତ । କିନ୍ତୁ ତୁମ୍ଭେ ନିଜେ ରାଜ୍ୟର ବୋଝ ନିଜ କାନ୍ଧରେ ବୋହିଲ । ସେଥିପାଇଁ ତୁମ୍ଭର ମନ ତୁମ୍ଭ ବଶରେ ରହିପାରୁନାହିଁ ଓ ତୁମ୍ଭେ ନିଜର କଲ୍ୟାଣ କାମ କରିପାରୁ ନାହିଁ । ଯାହା ପାଖରେ କିଛି ନାହିଁ ସେ ସୁଖରେ ଶୋଇପାରେ ଓ ଜାଗ୍ରତ ରହିପାରେ । ତୁମେ ଯଦି ସବୁ କିଛିତ୍ୟାଗ କରିପାରିବ ଓ କିଛି ସଂଗ୍ରହରେ ନ ଲାଗିବ ତେବେ ସବୁଠାରେ ତୁମେ ସୁଖର ସ୍ୱାଦ ପାଇପାରବ । ଅକିଞ୍ଚନର (ଯାହାର କିଛି ନାହିଁ) ସଂସାରରେ ସୁଖ ଅଛି । ଏହା ମନୁଷ୍ୟ ପକ୍ଷରେ ହିତକାରୀ, କଲ୍ୟାଣକାରୀ ଓ ନିରାପଦ ଅଟେ । ଅକିଞ୍ଚନର କେହି ଶତ୍ରୁ ନ ଥାଏ । ଏଥିଯୋଗୁ ଦୁର୍ଲଭ ହେଲେ ମଧ ଏହା ସହଜରେ ମିଳିପାରିବ । ତିନିଲୋକକୁ ଦୃଷ୍ଟି ଦେଇ ମୁଁ ଦେଖିପାରିଛି ଅକିଞ୍ଚନ ଶୁଦ୍ଧ ଅଟେ । ବୈରାଗ୍ୟ ସଂପନ୍ନ ଲୋକ ସହିତ ସବୁପ୍ରକାରରେ ସମକକ୍ଷ ଅଟେ । ତା ପରି ଆଉ କେହି ନାହାନ୍ତି । ଅକିଞ୍ଚନ ଓ ରାଜଭୋଗୀକୁ ମୁଁ ତୁଳନା କରି ଦେଖିଲି, ମାତ୍ର ଅକିଞ୍ଚନର ଓଜନ ସବୁବେଳେ ବେଶି ହେଲା । ଦୁଇଙ୍କ ମଧରେ ବଡ଼ ପ୍ରଭେଦ ହେଲା, ଧନୀ ରାଜା ସବୁପ୍ରକାର ଉଦବିଗ୍ନ ଥାଏ । ସୁଖ ତାକୁ ମରଣ ପରି ଲାଗେ, ମାତ୍ର ମଣିଷ ଯଦି ଧନ ପାଇବା ଆଶା ଛାଡ଼ିଦିଏ, କୌଣସି ଦ୍ରବ୍ୟରେ ଆସକ୍ତ ହୋଇନଥାଏ, ଅଗ୍ନି ତାର କ୍ଷତି କରିପାରେ ନାହିଁ । ଏମିତିକି ଅନିଷ୍ଟକାରି ଗ୍ରହ, ଚୋର ଡକାଏତ ସହିତ ମୃତ୍ୟୁ ତାର କ୍ଷତି ଘଟାଇ ନ ଥାଏ । ଦୈବୀ ଇଚ୍ଛାରେ ତାର ବିଶ୍ୱାସ ଥାଏ । ଭୂମି ତାର ଶଯ୍ୟା, ବାହୁ ତାର ଶେଯର ତକିଆ ହୋଇ ରହେ । ସେ ସବୁବେଳେ ଶାନ୍ତଭାବରେ ଥାଏ । ଦେବତାମାନେ ମଧ ତାର ଆଚରଣ ଦେଖି ତାର ପ୍ରଶଂସା କରିଥାନ୍ତି । ଧନବାନ୍ ବ୍ୟକ୍ତି କ୍ରୋଧ ଓ ଲୋଭର ବଶୀଭୂତ ହୋଇ ନିଜର ବିଚାରଶକ୍ତି

ହରାଇଥାଏ । ସମସ୍ତଙ୍କୁ ସେ ବଙ୍କା ଆଖିରେ ଦେଖିଥାଏ । ତାର ମୁହଁ ଶୁଖିଯାଏ । ସେ ସମସ୍ତଙ୍କୁ ନାକ ଟେକିଥାଏ ଓ ନାନା ପାପକର୍ମରେ ମଗ୍ନ ରହେ । ରାଗ ହେତୁ ସେ ଓଠ କାମୁଡ଼ି ହୁଏ । କଠିନ ବଚନ ସମସ୍ତଙ୍କୁ କହେ । ଶରତ ଋତୁ ଆସିଲେ ପବନରେ ମେଘ ଉଡ଼ିଲାପରି ସଂପତ୍ତି ହେତୁ ତାର ମନର ସଦ୍‌ଗୁଣ ଉଭେଇ ଯାଇଥାଏ । ଧନର ଗର୍ବ ଓ ରୂପର ଅହଂକାର ତାକୁ କବଳିତ କରନ୍ତି । ସେ ନିଜକୁ ଅସାଧାରଣ, ସବୁଠାରୁ କୁଳୀନ ଓ ସିଦ୍ଧ ମନେ କରେ । ତାର ଧନ, ରୂପ ଓ କୁଳର ଗର୍ବହେତୁ ସେ ଚିତ୍ତରେ ଭୋଗର ଲାଳସା ଭରି ରଖେ । ନିଜର ପିତୃ ଅର୍ଜିତ ଧନ ସେ ହରାଇ ବସେ । ତା ପରେ ସେ ଅନ୍ୟର ଧନକୁ ଲୋଭ କରି ତାକୁ ମଧ ମାଡ଼ି ବସେ । ନିଜର ମର୍ଯ୍ୟାଦା ସେ ହରାଇଥାଏ । ଚୋର ଡକାୟତଙ୍କ ଠାରୁ ଧନ ଆଣିବାକୁ ତାର ସଂକୋଚ ରହେନାହିଁ । ରାଜା ତାକୁ, ମୃଗକୁ ବ୍ୟାଧ ବାଣରେ ମାରିଲାପରି ଦଣ୍ଡ ଦେଇଥାନ୍ତି । ଏହିପରି ସେ ନାନାପ୍ରକାରର ଶାରିରୀକ ଓ ମାନସିକ କ୍ଲେଶ ଭୋଗ କରିଥାଏ । ଅନିତ୍ୟ ଶରୀର ସହିତ ସବୁବେଳେ ଲିପ୍ତ ରହି ସେ ଲୋକ ଧର୍ମକୁ ଉପେକ୍ଷା କରିଥାଏ । ଏହାର ଉପଯୁକ୍ତ ଚିକିତ୍ସା ଦରକାର ହୋଇଥାଏ । ତ୍ୟାଗ ବ୍ୟତୀତ କେହି ପରମାତ୍ମାଙ୍କୁ ଲାଭ କରିପାରେ ନାହିଁ । ତ୍ୟାଗ ବିନା କେହି ନିର୍ଭୟ ହୋଇ ରହିପାରେ ନାହିଁ । ଏହି ପ୍ରକାର ସୁଖ ସବୁ ତ୍ୟାଗର ମୂଳରେ ରହିଛି । ପୂର୍ବକାଳରେ ଜ୍ଞାନୀ ଶଂପାକ ବ୍ରାହ୍ମଣ ଏହା ମୋତେ ବୁଝାଇଥିଲେ । ତେଣୁ ତ୍ୟାଗକୁ ସବୁଠାରୁ ଶ୍ରେଷ୍ଠ ବୋଲି ଗ୍ରହଣ କରାଯାଇଅଛି ।

ମୋକ୍ଷରେ ଯେତେବେଳେ ରଖଇ ଆତ୍ମାକୁ — ସେକାଳେ ଜାଣିଲି ତରିଲି ସଂସାରକୁ ।
ଆପଣା ପାଇଁ ଯାହା କରୁଅଛ ଶ୍ରେୟ — ବିଚାରିଲେ ଏକଥା ଅଟଇ ଅଶ୍ରେୟ ।

ଅକାମ ହୋଇ ଯେବେ କର୍ମ କର ନିତି — କହୁଛି ନିକଟେ ମିଳିବ ମୋକ୍ଷଭୂତି
ନିର୍ଦ୍ଧନ ହୋଇବାର ଅଟେ ମହାସୁଖ — ଧନଥିଲେ ଅବଶ୍ୟ ପଡୁଥାଏ ଦୁଃଖ ।

ଦରିଦ୍ରତା ରାଜତ୍ୱ ଦୁହିଁକି ପୂର୍ବରେ — ତୁଳିଲି, ଦରିଦ୍ରତା ବଳି ଅଧିକରେ
ଏହି ସକାଶୁଁ ମୁଁ ଯେ କହୁଛି ତୁମ୍ଭକୁ — ଦରିଦ୍ର ହେଲେ ଲୋକ ତରେ ସଂସାରକୁ ।

ଧନତ୍ୟାଗୀ ଲୋକର ଅଗ୍ନି, ଚୋର ଭୟ — ହେବାର ଆଉ ଜାଣି ନ ପାରେ ହୃଦୟ
ତଳେ ଶୋଇ ହାତ ମୁତୁଳି ଯେ କରଇ — ଦେବେ ତାହାକୁ ପ୍ରଶଂସନ୍ତ ତୋଷ ବହି ।

ଧନବନ୍ତ ଲୋକ ଫୁଲାଇଦେଇ ଛାତି — ବସି ଚାଖି କରିଣ କହୁଥାଏ ନିତି
ଚାଲିଲା ବେଳେ ଦୋହଲାଇ ଦୁଇଡେଣା — ହୋଇଡ ଥାଏ ଧନମଦେ ବୁଦ୍ଧିବଣା ।

କରୁଥାଏ ଲୋକଙ୍କୁ ଦେଖି ପରିହାସ — ବଚନରେ ବୋଲଇ ଅଟନ୍ତି ଏ କିସ
ବନ୍ଧୁ କରି ଅଳପ ଅନାଇଣ ଦିଏ — କହିଲେ କଥା ଲୋକ କାନେ ନ ପକାଏ ।

ମଣିମା ଆଜ୍ଞା, କରଯୋଡ଼ି ପରିଜନ
ବୋଲୁଥିଲେ ହେଉଣ ଥାଏ ତୋଷମନ
ଅମାନୁଷ ବୁଦ୍ଧିକି ଧରଇ ଦେହରେ
ପଡୁଥାଏ ସେ ନିତି ସ୍ତ୍ରୀରିଙ୍କ ସ୍ନେହରେ ।

ଏ କଥା ଜାଣି ସିନା କହୁଛି ତୁମ୍ଭକୁ
କେ ସହି ପାରିବଟି ଧନୀକ ଲୋକକୁ
ଧନୀଲୋକ ହାତରୁ ଧନ ଗଲେ ଖସି
ପରଧନଟିରେ ସେ ହୁଅଇ ଲାଳସୀ ।

ତାହାଶୁଣି ତାହାକୁ ମରାଇ ରାଜନ
ଘେନିଯାଏ ଯେତେକ ତାର ଥାଏ ଧନ
ଏହି ସଙ୍କାଶରୁ ଧନ ସୁଖକୁ ଛାଡ଼ି
ଦୁଃଖରେ ଦଉଡ଼ିବ ଲୋକ ହରଘଡ଼ି ।

ତ୍ୟାଗ ହିଁ ଶ୍ରେଷ୍ଠସୁଖ ସଂସାର ମଧ୍ୟରେ
ତ୍ୟାଗରେ ଲୋକାତୀତ ଧନ ମିଳିପାରେ
ବିଷୟ ବାସନାଟି ଦୁଃଖର କାରଣ
ତ୍ୟାଗ କରି କର ହେ ନିର୍ଭୟେ ଶୟନ ।

ତ୍ୟାଗ, ନ କରିଲେ ଲୋକର ମୋକ୍ଷଲୋକ
ହୋଇବାର କଷ୍ଟଟି କର ହେ ବିବେକ ।

ଶଂପାକ ଶେଷରେ ତାଙ୍କୁ ସର୍ବତୋଭାବରେ ବିଷୟବାସନା ତ୍ୟାଗ କରି ସୁଖୀ ହେବାକୁ ଉପଦେଶ ଦେଇଥିଲେ । ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଲେ -

ସେହି ଦିନୁଁ ଧନରେ ତୁଚ୍ଛ ବୁଦ୍ଧି କରି
ଆଜଯାଏ ଜାଣ ମୁଁ ଦେଲି ଦିନ ସାରି
ଏମୋକ୍ଷ ଶାସ୍ତ୍ର ଟେସି ହରିତ ମହର୍ଷି
ଲୋକେ ହିତ ପାଇ ସୁଖେଛନ୍ତି ଭାଷି ।

ତ୍ୟାଗ ସର୍ବୋତ୍କୃଷ୍ଟ ଏହା ଶଂପାକ ଗୀତାର ସାରାଂଶ ଅଟେ ।



ହିରଣ୍ୟକଶିପୁ ବ୍ରହ୍ମାଙ୍କଭଳି ଗୁରୁ ପାଇଥିଲା । ରାବଣ ଶିବଙ୍କ ପରି ଗୁରୁ ପାଇଥିଲା । ସେମାନଙ୍କର ତ ଅଧଃପତନ ହୋଇଥିଲା ଆଉ ଆମେ ଛାର ମଣିଷଗୁଡା । ଯେତିକି କହୁଛି କରିବାକୁ ସେତିକି ମଧ କରୁନାହୁଁ । ସ୍ୱାର୍ଥପର ଦୁନିଆଟାରେ ପରସ୍ପରଠୁଁ ସ୍ୱାର୍ଥ ଆଦାୟ କରିବାରେ ଲାଗି ପଡିଛୁ । ଏଣୁ କୃପା ପାଇ ପାରୁନାହୁଁ । ସମୁଦ୍ର ଠାରୁ କୃପା ବାରି ଭୀକ୍ଷା କରିବା ବାହୁଲ୍ୟ । ସେପରି ଭଗବତ୍ କୃପା ବାରି ଅନବରତ ବୃଷ୍ଟି ହେଲେ ମଧ ଆମେ ଅଭିମାନ ମଦରେ ମତ୍ତ ଥିବା ହେତୁ ସେ କରୁଣାର ଢ଼େଉ ଆମ ପାଖରେ ପହଞ୍ଚି ପାରୁନାହିଁ । ଯେମନ ସୂର୍ଯ୍ୟୋର କିରଣ୍ ସର୍ବତ୍ରପଡେ । କିନ୍ତୁ ଯାରା ଆଭରନ୍ ମଧେ ଥାକେ ତାରା କିରନ୍ ଥାକେ ବଞ୍ଚିତ ହୟ । ଆମ୍ରା ମାୟାର ଆଭରନ୍ ବା ପରଦାର ମଧେ ଆଛେ । ଏ ଜନ୍ୟ ଗୁରୁଦେବର ଅର୍ଥାତ୍ ଜ୍ଞାନ ସୂର୍ଯ୍ୟୋର ଆଲୋ ହଇତେ ବଞ୍ଚିତ୍ ।

*ବାଯାବାଣୀ....*

# ମଂକି ଗୀତା

*(ଧନତୃଷ୍ଣାରେ ଦୁଃଖ ଓ ଏହି କାମନା ତ୍ୟାଗରେ ପରମ ସୁଖ ପ୍ରାପ୍ତି)*

ଯୁଧିଷ୍ଠିର ପୁଣି ପଚାରିଲେ ଇହଲୋକରେ ମନୁଷ୍ୟ ଧନତୃଷ୍ଣାରେ ଅଭିଭୂତ ହୋଇ କୃଷି, ବାଣିଜ୍ୟ କରି ତଥାପି ଧନ ଉପାର୍ଜନରେ ଅସମର୍ଥ ହେଲେ ସେ କି କାର୍ଯ୍ୟ କଲେ ସୁଖୀ ହୋଇପାରିବ ।

ପିତାମହ ଭୀଷ୍ମ ତାଙ୍କୁ କହିଲେ.....

*ସମତା ଅନାୟାସ*
*ନିର୍ବେଦ ସତ୍ୟବାକ୍ୟ ଅହିଂସା ପ୍ରକାଶ*
*ହୃଦୟ ମଧ୍ୟେ ଯେଉଁ ଲୋକଟି କରଇ*
*ସେହି ଲୋକଟିକୁ ସୁଖୀ ବୋଲିକରି କହି ।*

ଅର୍ଥାତ - ଲାଭାଲାଭ, ମାନ ଅପମାନକୁ ଯେ ସମଚକ୍ଷୁରେ ଦେଖନ୍ତି, ଯାହାଙ୍କର ଧନଲାଭରେ ଚେଷ୍ଟା ନଥାଏ, ଯେ ସତ୍ୟବାଦୀ ଓ ବୈରାଗ୍ୟ ଲାଭ କରି କର୍ମ ଅନୁଷ୍ଠାନରେ ଅଭିଳାଷୀ ନୁହନ୍ତି ସେହିଁ ପ୍ରକୃତରେ ସୁଖୀ । ଏହି ପ୍ରସଙ୍ଗରେ ପିତାମହ ଯୁଧିଷ୍ଠିରଙ୍କୁ ମହାତ୍ମା ମଂକିଙ୍କର ଉପାଖ୍ୟାନ ଶୁଣାଇଲେ । ସେ ଦରିଦ୍ର ଥିଲେ । ଧନ ଉପାର୍ଜନ ଉଦ୍ଦେଶ୍ୟରେ ଅନେକ ଚେଷ୍ଟା କଲେ । ସେ ଧନ ଦେଇ ଯୋଡ଼ିଏ ଦାମୁଡ଼ି କିଣିଲେ । ସେମାନଙ୍କୁ ମଣ କରିବା ପାଇଁ ଦୁହିଁଙ୍କ କାନ୍ଧରେ ଜୁଆଳି ପକାଇ ଯୋଚିଲେ । ସେମାନେ ଦିନେ ରାସ୍ତାରେ ଦଉଡ଼ିଲେ । ରାସ୍ତା ଉପରେ ଗୋଟିଏ ଓଟ ଶୋଇଥିଲା । ତା ଉପରେ ଦାମୁଡ଼ି ଦିଓଟି ଚଢ଼ିଗଲେ । ସେ ଉଠି ଦୌଡ଼ିଲା । ଦାମୁଡ଼ି ଦୁହେଁ ଜୁଆଳି ସହିତ ତା କାନ୍ଧରେ ଥାଇ ଛଟପଟ ହେଲେ । ଓଟ ସେମାନଙ୍କୁ ଧରି ଦଉଡ଼ି ପଳାଇଗଲା । ମହାତ୍ମା ମଙ୍କି ନିଜ ମନ ମଧ୍ୟରେ ଏହା ଆଲୋଚନା କଲେ । ସେ କହିଲେ ଦୈବ ଅନୁକୂଳ ନ ହେଲେ ଶତଚେଷ୍ଟା ସତ୍ତ୍ୱେ ମନୁଷ୍ୟ ଧନଲାଭ କରିବାକୁ ଅକ୍ଷମ ହୁଏ । ନାନ ପ୍ରକାର ଅର୍ଥ ଉପାର୍ଜନ ଚେଷ୍ଟା କରି ବିଫଳ ହୋଇ ଆମ୍ଭେ ଦାମୁଡ଼ି ଦୁଇଟି କିଣି ଅର୍ଥଲାଭ ଉଦ୍ୟମ କରୁଥିଲୁ, ତାହା ମଧ୍ୟ ବିଫଳ ହେଲା । ଦୈବ ଉପଦ୍ରବ ଏହାର କାରଣ । ପୁରୁଷକାରଦ୍ୱାରା ଯଦି କୌଣସି କାର୍ଯ୍ୟ ସିଦ୍ଧ ହୋଇଥାଏ ତେବେ ତାହାକୁ ବିଶ୍ଳେଷଣ କରି ଦେଖିଲେ ଜଣାଯିବ ଏହା ଦୈବବିହିତ । ସଂସାରରେ ସୁଖାଭିଳାଷୀ ମାନଙ୍କର ବୈରାଗ୍ୟ ଅବଲମ୍ବନ ଅବଶ୍ୟ କର୍ତ୍ତବ୍ୟ । ସଂସାର ତ୍ୟାଗୀ ମାନବ, ଅର୍ଥ ଉପାର୍ଜନ ଆଶା ତ୍ୟାଗ କରି ସୁଖରେ ନିଦ୍ରା ଯାଆନ୍ତି । ଶୁକଦେବ ସମସ୍ତ ପରିତ୍ୟାଗ କରି ରାଜା ଜନକଙ୍କ ଗୃହରୁ ମହାରଣ୍ୟକୁ ପ୍ରସ୍ଥାନ କରିବା ସମୟରେ କେତୋଟି ଉତ୍କୃଷ୍ଟ ବାକ୍ୟ କହିଥିଲେ ।

*"କାମକୁ ଚଢ଼ିବାର ଉତ୍ତମ ଅଟଇ*
*କାମରେଅନ୍ତ କେଉଁ ଲୋକ ପାଇନାହିଁ ।*
*କାମକୁ ନିତି ବସି, କହୁଥିବ ଲୋକ*
*ନ ହରାଏ ମୋହର ଧର୍ମରୁ ବିବେକ ।"*

ଧନ ଉପାର୍ଜନ ପବୃତ୍ତିରୁ ନିବୃତ୍ତ ହେଲେ ବୈରାଗ୍ୟ ଅବଲମ୍ବନ କରି ମନ ସୁଖ ପାଏ । କାମନାର ଅସାରତା ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରି ମହାତ୍ମା ମଙ୍କି ଶେଷରେ ଜାଣିଲେ ଯେ ଦେହକୁ ପଞ୍ଚଭୂତ ସମଷ୍ଟି ବୋଲି ମନେ କରିବା, ମନ ମଧ୍ୟରେ ଆତ୍ମାକୁ ଅବଲୋକନ କରିବା, ଯୋଗରେ ଚିତ୍ତ ନିବେଶ କରିବା, ଶ୍ରୁତିରେ ଏକାଗ୍ରତା, ପରଂବ୍ରହ୍ମରେ ମନ ସଂଯୋଗ କରି ଅନାସକ୍ତ ଭାବରେ ସୁଖୀ ଓ ରାଗଦ୍ୱେଷ ବର୍ଜିତ ହୋଇ ସଂସାରରେ ବିଚରଣ କଲେ ମନ ମନୁଷ୍ୟକୁ ଦୁଃଖରାଶି ମଧ୍ୟରେ ମଜ୍ଜାଇଦେଇ ପାରିବ ନାହିଁ ।

ଏହି ରୂପେ ଭାବି ମଙ୍କି ମନକୁ ବୁଝାଇ ନିଜ କାମନାକୁ କହିଲେ :-

ଏ ରୂପେ ଭାବି ଭାବି ମଙ୍କି କହିଲେ କାମକୁ
ଯାଅ ଛାଡ଼ି ମୋହର ହୃଦୟ ଗୃହକୁ ।
ଅସ୍ମ ପରି ନିଷ୍ଠୁର କଲୁ ତ ହୃଦୟ
ପଡୁ ତୋ ମୁଣ୍ଡେ ଆସି ଧର୍ମବଜ୍ର ତ୍ରୟ ।

ସଂକଳ୍ପରୁ ତୁ ସିନା ଅଟୁ ଜାତ ହୋଇ
ସଂକଳ୍ପ ଛାଡ଼ିଦେବି ସତ୍ୟ କରି ମୁହିଁ ।
ଧନଲୋଭୀ ମନୁଷ୍ୟ ପତ୍ରକୁ ମାରଇ
ନ ପାଇଲେ କସର ନିଶ୍ୱାସ ପକାଇ ।

ଏହା ଜାଣି ମୁହିଁ ବୋଲୁଛି ଆହେ ଭୂତ ପାଞ୍ଚେ
ମୋହର ଦେହରୁ ହୁଅ ଅନ୍ତର୍ହିତ ।
ତୃଷ୍ଣା ଶୋକ ଶ୍ରମର କାରଣ ତୁ କାମ
ମୋତେ ଛାଡ଼ ତୋତେ ହେଉଛି ନମୋନମଃ ।

ତୋର ସହାସ୍ତ ଦୁଃଖ ପାଉ ମୁଁ ନିରେଖ
ହେଲିଣି ଛାଡ଼ି ଦିଅ ମନେ କହି ସୁଖ ।
ତୃପ୍ତିମତି ହୋଇ ରହିଅଛି ମୁହିଁ
ନ ପାଞ୍ଚ କାମ ମୋତେ ବିଷୟରେ ନେଇ ।

ନିର୍ବେଦ, ସୁଖ, ତୃପ୍ତି, ଶାନ୍ତି, ସତ୍ୟ, ଦମ
କ୍ଷମା, ଦୟାରେ ମୁଁ ରହିଛି ଛାଡ଼ି କାମ ।
ତୋତେ ଛାଡ଼ିକରି ମୁଁ ରହିଛିଟି ଯେବେ
ବ୍ରହ୍ମାଦି ଦେବେ ମୋତେ ପୂଜିବେଟି ତେବେ ।

ଏହି ପ୍ରକାରେ ମହାତ୍ମା ମଙ୍କି ବୈରାଗ୍ୟ ଦ୍ୱାରା ସମସ୍ତ କାମନା ପରିତ୍ୟାଗ କରି ପରଂବ୍ରହ୍ମକୁ ପ୍ରାପ୍ତ ହୋଇ ଉତ୍କୃଷ୍ଟ ଆନନ୍ଦ ଲାଭ କରିଥିଲେ । ଏଥିରୁ ସାରଶିକ୍ଷା କାମନାର ମୂଳ ଉତ୍ପାଟନ ମହତ ସୁଖ ଲାଭର ମୂଳସୂତ୍ର ।



# ବୋଧ୍ୟ ଗୀତା

*(ଅନନ୍ତ ବିଭବଶାଳୀ ରାଜାଜନକ ଓ ରାଜାଯଯାତିଙ୍କ କଥୋପକଥନ -*
*ଆଶା ଦୁଃଖଦାୟୀ ଓ ନିରାଶା ପରମ ସୁଖ)*

ଏହି ପ୍ରସଙ୍ଗରେ ପିତାମହ ଭୀଷ୍ମ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ - ରାଜା ନହୁଷ ଏକଦା ବୈରାଗ୍ୟ ଜନିତ ଶାନ୍ତିଭାବାପନ୍ନ ଶାସ୍ତ୍ରଜ୍ଞାନସଂପନ୍ନ ପାନ୍ତ, ବୋଧ ଋଷିଙ୍କୁ ଶାନ୍ତିଲାଭ ନିମିତ୍ତ ଉପଦେଶ ଦେବାକୁ କହିଥିଲେ । ସେହି ଇତିହାସ ମୁଁ ତୁମ୍ଭଙ୍କୁ କହୁଅଛି । ପୂର୍ବେ ମିଥିଳାର ରାଜା ମହାତ୍ମା ଜନକ ବୈରାଗ୍ୟ ଲାଭ ନିମିତ୍ତ ଏହି ବୋଧ ଋଷିଙ୍କ ପ୍ରଦତ୍ତ ଶ୍ଳୋକଗୁଡ଼ିକର ଉଦାହରଣ ଦେଇଥିଲେ । ଜନକ କହିଥିଲେ ଆମ୍ଭର ବିପୁଳ ବିଭବ ଥିଲେ ମଧ ଆମ୍ଭେ ଅକିଞ୍ଚନ ଅଟୁ । ସମସ୍ତ ମିଥିଳାନଗରୀ *(ମିଥିଳାୟାଂ ପ୍ରଦୀପ୍ତାୟାଂ ନ ମେଦହ୍ୟତି କିଞ୍ଚିତ)* ଭସ୍ମୀଭୂତ ହେଲେ ସୁଦ୍ଧା ଆମ୍ଭର ସେଥିରେ କୌଣସି ଲାଭ ବା କ୍ଷତି ହୋଇ ନ ଥାଏ । ବୋଧ୍ୟ ଋଷି ନହୁଷକୁ କହିଲେ ଆମ୍ଭେ ଉପଦେଶ ଗ୍ରହଣ କରୁ ମାତ୍ର କାହାକୁ ଉପଦେଶ ପ୍ରଦାନ କରି ନ ଥାଉ ।

ପିଙ୍ଗଳା, କୁରର ପକ୍ଷୀ, ସର୍ପ, ସାରଙ୍ଗ,ବ୍ୟାଧ ଓ କୁମାରୀ ଏହି ଛଅଟି ଆମ୍ଭର ଗୁରୁ । ଏମାନଙ୍କଠାରୁ ଆମ୍ଭେ ଶିକ୍ଷା ଲାଭ କରିଅଛୁ ।

ପ୍ରଥମ ଗୁରୁ ପିଙ୍ଗଳା

(୧) ବାରବନିତା ପିଙ୍ଗଳା କହିଲା :-

ଦେଖ ମୋହର ମୋହଜାଲ — ଅଜ୍ଞାନେ ବଞ୍ଚିଲି ମୁଁ କାଳ,
ସର୍ବନାଶିଲି ଧନ ଲୋଭେ — ନାରୀ ସ୍ୱଭବେ କାମ ଭୋଗେ ।
ଅସାଧୁ ପୁରୁଷଙ୍କ ମେଳେ — କାନ୍ତର ଭାବେ କାମଭୋଳେ ।
ରମିଲି ଧନେ ଦେଇ ମନ — ଧିକ୍ ମୋହର ଏ ଜୀବନ ।

ସେ ଶିକ୍ଷା ଦେଲା -

ନିଷ୍କାମ ଜନ୍ମେ ଯା ଶରୀରେ — ଆତ୍ମାକୁ ଆପଣେ ଉଦ୍ଧରେ
ପରମ ସୁଖ ବଇରାଗ — ଆଶା ପରମ ଦୁଃଖ ଭୋଗ !!

ପିଙ୍ଗଳାଠାରୁ ଶିକ୍ଷାମିଳେ :- ଆଶା, ପରମ ଦୁଃଖ ଓ ବୈରାଗ୍ୟ ପରମ ସୁଖ ଅର୍ଥାତ -

ଆଶା ଅତି ବଳବତୀ, ନୈରାଶ୍ୟରେ ପରମ ସୁଖ ଅଛି ।
ପିଙ୍ଗଳା ଆଶାକୁ ନିରାଶାରେ ପରିଣତ କରି ସୁଖରେ ଶୟନ କରିଥିଲା ।

ରାଜା ନହୁଷଙ୍କୁ ବୋଧ୍ୟଋଷି ତାଙ୍କ ଗୁରୁ କୁରର ପକ୍ଷୀ ଦ୍ୱିତୀୟ ଗୁରୁଙ୍କ ଠାରୁ ପାଇଥିବା ଶିକ୍ଷା ବୁଝାଇଲେ ।

(୨) ପକ୍ଷୀଙ୍କ ମଧ୍ୟେ ବଳିଆର — ସ୍ୱଭାବେ ପ୍ରଚଣ୍ଡ କୁରର
ନିତ୍ୟେ ମାରଇ ନାନା ପକ୍ଷୀ — ଜୀବନ ପୋଷେ ମାଂସ ଭକ୍ଷି ।

ତାର ଚଞ୍ଚୁରେ ମାଂସ ଦେଖି ଅନ୍ୟ ମାଂସାଶୀ ପକ୍ଷୀମାନେ ତା ପଛରେ ଗୋଡ଼ାନ୍ତି । ସେ ଡରରେ ମାଂସ ଫିଙ୍ଗିଦେଲେ ଅନ୍ୟ ପକ୍ଷୀମାନେ ତାକୁ ଗୋଡ଼ାଇବା ବନ୍ଦକରନ୍ତି ।

ସେ ପୁଣି ନିତ୍ୟ ପକ୍ଷୀମାରେ — ମାଂସ ଭକ୍ଷଇ ନେଇ ପରେ ।
କେବଳ ଶ୍ରମ ମାତ୍ର ସାର — ନ ଭକ୍ଷି ଉଚିତ ଆହାର ।

ଏଣୁ ମୁଁ ତାର ଦୁଃଖ ଚାହିଁ — ତା ଠୁଁ ଗୁରୁଶିକ୍ଷା ପାଇ ।
ନ କରି ବସ୍ତୁ ପରିଗ୍ରହ — ଏବା ଭ୍ରମଇ ଶୂନ୍ୟଦେହ ।

ନାହିଁ ମୋ ମାନ ଅପମାନ — ଗୃହ କଳତ୍ର ପୁତ୍ର ଧନ ।
ଆତ୍ମାରେ ରମଇଁ ମୁଁ ନିତ୍ୟେ — ଭ୍ରମଇ ନିଶ୍ଚିନ୍ତେ ଜଗତେ ।

ପରମାନନ୍ଦ ରସ ପାଇ, ନିରତେ ସଂସାରେ ଭ୍ରମଇ, ଅର୍ଥାତ - କୁରରଠାରୁ ଦ୍ରବ୍ୟ ପରିଗ୍ରହ ଓ ତ୍ୟାଗର ଶିକ୍ଷା ମିଳିଥାଏ ।

(୩) ସର୍ପ ତାଙ୍କର ୩ୟ ଗୁରୁ

ଗୃହାରମ୍ଭ ଦୁଃଖର କାରଣ ଅଟେ,କଦାପି ସୁଖର କାରଣ ନୁହେଁ । ସର୍ପ ଗୃହ ନକରି ପର ଗୃହରେ ଥାଇ ସୁଖୀ ଥାଏ । ଏହା ତାହାଠାରୁ ଶିକ୍ଷା ମିଳେ ।

ବିଫଳ ଅନିତ୍ୟ ଦେହର — ଗୃହ ଆରମ୍ଭ ଦୁଃଖ ଘୋର ।
ଏ ଯେନି ଗୃହାରମ୍ଭ ଛାଡ଼ି — ଦେହର ରକ୍ଷାମାତ୍ର ଲୋଡ଼ି ।

ଆତ୍ମା କାରଣେ ବ୍ୟର୍ଥପର — କେବେହେଁ ନ କରି ତତ୍ପର ।
ଶରୀର ରଖଇ ନିରୋଳେ — ସର୍ପ ଯେସନେ ନାନା ବିଳେ ।

(୪) ସାରଙ୍ଗପକ୍ଷୀ ୪ର୍ଥଗୁରୁ - ମୁନିମାନେ ଭିକ୍ଷାବୃତ୍ତି ଅବଲମ୍ବନ କରି ସାରଙ୍ଗ ପକ୍ଷୀ ସଦୃଶ ଜୀବର ଅନିଷ୍ଟ ନ କରି ସୁଖରେ ଜୀବନ ଯାପନ କରନ୍ତି । ସାରଙ୍ଗପକ୍ଷୀ କୌଣସି ଜୀବକୁ କ୍ଳେଶ

ନଦେଇ ନିଜର ଜୀବିକା ଅର୍ଜନ କରିଥାଏ ।

(୫) ବ୍ୟାଧ ପଞ୍ଚମ ଗୁରୁ -

କାଣ୍ଡ ସଜାଡିବା ଶରକାରୀ ଲୋକଟି କାଣ୍ଡେ ମନ ଦେଇ ସୁଖକୁ ଲଭୁଥାଏ ଅବିଛିନ୍ନ ହୋଇ ।

ବ୍ୟାଧ ବାଣ ନିକ୍ଷେପରେ ନିବିଷ୍ଟ ଚିତ୍ତ ହୋଇ ନିକଟରେ ଯାଉଥିବା ରାଜାଙ୍କୁ ମଧ୍ୟ ଜାଣି ପାରି ନଥାଏ, ଏକାଗ୍ରତା ତାହାଠାରୁ ଶିକ୍ଷା ମିଳିଥାଏ ।

"ଏଣୁ ମୁଁ ସାବଧାନ ଚିତ୍ତ ଅଲକ୍ଷ୍ୟ ଗତି ମୋର ନିତ୍ୟ" ।

(୬) କୁମାରୀ କନ୍ୟା ବୋଧ୍ୟ ଋଷିଙ୍କର ଷଷ୍ଠ ଗୁରୁ - ବହୁ ବ୍ୟକ୍ତି ଏକତ୍ର ହେଲେ କଳହ ହୁଏ । ଏହା କୁମାରୀ ଚାଉଳ କାଣ୍ଡୁଥିବା ବେଳେ ତା' ହାତ ଶଙ୍ଖାର ଶବ୍ଦରୁ ଶିକ୍ଷା ମିଳେ । ଦୁଇ ହସ୍ତରେ ଦୁଇଗୋଟି ଶଙ୍ଖାରଖି ଅବଶିଷ୍ଟ ପିଙ୍ଗିଦେଲେ ଶବ୍ଦ ନିବାରିତ ହୋଇଥାଏ ।

ପଟେ ଶଙ୍ଖା ବହି କୁମାରୀ ଧାନକୁଟି ସ୍ୱଇଚ୍ଛାରେ ମହାସୁଖକୁ କଲା ଲୁଟି ।

ତା'ଠାରୁ ଶିକ୍ଷାର ସାରାଂଶ :

ଯହିଁ ଅନେକ ଲୋକ ମିଳି ଅବଶ୍ୟ ଉପୁଜଇ କଳି<br>
ଏକାନ୍ତେ ଭ୍ରମୁଥାଇ ମୁହିଁ କେବେହେଁ ସଙ୍ଗ ନକରଇ ।

*(ଶ୍ରୀମଦଭଗବତ ଏକାଦଶ ସ୍କନ୍ଧରୁ ପଦ୍ୟାଂଶ ଜଗନ୍ନାଥ ଦାସଙ୍କ ଅନୁବାଦିତ)*

ପିତାମହ ଭୀଷ୍ମ ସାରାଂଶରେ କହିଲେ ଶାନ୍ତ ବୋଧ୍ୟ ଋଷିଙ୍କର ପିଙ୍ଗଳା, କୁରର ପକ୍ଷୀ, ସର୍ପ, ସାରଙ୍ଗ ପକ୍ଷୀ, ବ୍ୟାଧ, କୁମାରୀ କନ୍ୟା ଏହି ଛଅଗୋଟି ଗୁରୁଥିଲେ । ଆଶା ଅତି ବଳବତୀ । ନୈରାଶ୍ୟରେ ପରମ ସୁଖ ଅଛି । ପିଙ୍ଗଳା ଆଶାକୁ ନିରାଶାରେ ପରିଣତ କରି ସୁଖରେ ଶୟନ କରିଥିଲା । ଆମିଷଯୁକ୍ତ ପକ୍ଷୀକୁ ଅନ୍ୟ ପକ୍ଷୀମାନେ ମାରିବାକୁ ଉଦ୍ୟତ ହେବା ବେଳେ ସେ ମାଂସ ଖଣ୍ଡ ପିଙ୍ଗି ଦେଇ ସୁଖ ଲାଭ କଲା । ଗୃହାରମ୍ଭ କେବଳ ଦୁଃଖର କାରଣ - ସୁଖର ନୁହେଁ । ସର୍ପ ପର ତିଆରି ବିଳରେ ପ୍ରବେଶ କରି ସୁଖରେ ରହେ । ମୁନିମାନେ ଭିକ୍ଷାବୃତ୍ତି ଅବଲମ୍ବନ କରି ଜୀବର ଅନିଷ୍ଟ ନ କରି ସୁଖରେ କାଳାତିପାତ କରନ୍ତି । ବ୍ୟାଧ ବାଣ ନିକ୍ଷେପରେ ମନଯୋଗୀ ଥାଇ ନିକଟରେ ଯାଉଥିବା ରାଜାଙ୍କ ଉପସ୍ଥିତି ସୁଦ୍ଧା ଲକ୍ଷ୍ୟ କରି ନଥିଲା । କାଣ୍ଡ ସଜାଡିବାରେ ମନ ଦେଇ ସେ ଅବିଚ୍ଛିନ୍ନ ସୁଖଲାଭ କରିଥିଲା । ବହୁ ବ୍ୟକ୍ତି ଏକତ୍ର ହେଲେ କଳହ ହୁଏ, ଏହା ସେ ଧାନକୁଟାଳୀ କୁମାରୀର ହାତରେ ଥିବା କଙ୍କଣମାନଙ୍କରୁ ଶିକ୍ଷା କରିଥିଲେ ।



# ବିଚଖ୍ନୁ ଗୀତା

*(ରାଜା ବିଚଖ୍ନୁଙ୍କ ଦ୍ୱାରା ଅହିଂସାମାର୍ଗର ପ୍ରଶଂସା)*

ଶାନ୍ତି ପର୍ବର ୨୬୪ ଅଧ୍ୟାୟରେ ଭୀଷ୍ମଦେବ ଧର୍ମରାଜ ଯୁଧିଷ୍ଠିରଙ୍କୁ ଅହିଂସାର ଶ୍ରେଷ୍ଠତା ବର୍ଣ୍ଣନା କରି ଶୁଣାଇ ଅଛନ୍ତି । ରାଜା ବିଚଖ୍ନୁ ଏହା କହିଥିବା ହେତୁ ଏହା ବିଃଚଖ୍ନୁ ଗୀତା ନାମରେ ପରିଚିତ ।

ରାଜା ବିଚଖ୍ନୁ ଗୋମେଧ ଯଜ୍ଞରେ ଛିନ୍ନ ଶରୀର ବୃଷ ଓ ନିର୍ଦ୍ଦୟ ବ୍ରାହ୍ମଣମାନଙ୍କୁ ଦେଖିଲେ । ଗୋ-ଜାତିର ବିଳାପ ମଧ ଶୁଣିଲେ । ଗୋ-ହିଂସା ନିବାରଣ ନିମିତ୍ତ ଅହିଂସାର ଉପାୟ ସେ ଶୁଣାଇଲେ । ସଂଶୟ ଚିତ୍ତ ବିମୂଢ଼ ନାସ୍ତିକମାନେ ଯଜ୍ଞଆଦି ଦ୍ୱାରା ଖ୍ୟାତିଲାଭ କରିବାକୁ ଇଚ୍ଛାକରି ପଶୁହିଂସାକୁ ପ୍ରଶଂସା କରିଅଛନ୍ତି । ମାତ୍ର ସର୍ବ ବେଦର ତତ୍ତ୍ୱ ଅର୍ଥ ଜାଣିଥିବା ମନୁ ଅହିଂସାକୁ ହିଁ ପ୍ରଶଂସା କରିଅଛନ୍ତି । ଯଥେଚ୍ଛାଚାର ବଶତଃ ମନୁଷ୍ୟମାନେ ଯଜ୍ଞ ବ୍ୟତୀତ ଅନ୍ୟ ସ୍ଥଳରେ ମଧ ପଶୁ ହିଂସା କରିଥାଆନ୍ତି । କୌଣସି ପ୍ରାଣୀପ୍ରତି ହିଂସା ଭାବ ନରଖିବା ସବୁ ଧର୍ମ ମଧରେ ଶ୍ରେଷ୍ଠ ଧର୍ମ । ଫଳ କାମନା କରି ଯେଉଁମାନେ କର୍ମ କରନ୍ତି ସେମାନେ କ୍ଷୁଦ୍ର ସ୍ୱଭାବ ସଂପନ୍ନ ବ୍ୟକ୍ତି । ଯଜ୍ଞ ପରାୟଣ ବ୍ୟକ୍ତିମାନଙ୍କର ବୃଥା ମାଂସ ଭକ୍ଷଣ କରିବା ଅନୁଚିତ । ଯେଉଁମାନେ ଯୂପକାଠ ନିମିତ୍ତ ବୃଥାରେ ବୃକ୍ଷ ଛେଦନ କରନ୍ତି ଓ ଯଜ୍ଞ ଉଦ୍ଦେଶ୍ୟରେ ପଶୁବଳି ଦେଇ ମାଂସ ଭକ୍ଷଣ କରନ୍ତି ସେମାନଙ୍କର ଆଚରଣ ପ୍ରଶଂସା ଯୋଗ୍ୟ ନୁହେଁ । ମନୁଷ୍ୟ ସମାଜରେ ଧୂର୍ତ୍ତମାନେ ସୁରା, ମତ୍ସ୍ୟ, ମଧୁ, ମାଂସ, ଆସବ, ତିଳ ଓ ଅନ୍ନ ଖେଚୁଡି ପ୍ରବର୍ତ୍ତନ କରି ଅଛନ୍ତି । ଏହା ବେଦରେ କୁହାଯାଇ ନାହିଁ । ନିଜର ସ୍ୱାର୍ଥ ନିମିତ୍ତ ଏହି ଧୂର୍ତ୍ତମାନେ ଏହାକୁ ସୃଷ୍ଟି କରିଅଛନ୍ତି । ଅଭିମାନ ମୋହ ଓ ଲୋଭ ହେତୁରୁ ମନୁଷ୍ୟମାନଙ୍କର ସୁରାପାନ ପ୍ରତି ଲୋଭ ଆସିଥାଏ । ବ୍ରାହ୍ମଣମାନେ ସବୁ ଯଜ୍ଞରେ ସର୍ବବ୍ୟାପୀ ପରମାତ୍ମାଙ୍କର ଆବିର୍ଭାବ ଜାଣି ତୃପ୍ତି ଲାଭ କରିଥାଆନ୍ତି । ପାୟସ ଓ ପୁଷ୍ପ ଦ୍ୱାରା ସେହି ଆତ୍ମାଙ୍କର ଅର୍ଚ୍ଚନା କରାଯାଇଥାଏ । ସଦଗୁଣୀ ପୁରୁଷ ବିଶୁଦ୍ଧ ଭାବନାରେ ଏହା ଅଗ୍ନିରେ ଦେବା ଉଚିତ । ତାହାହେଲେ ଏହା ଦେବଯୋଗ୍ୟ ହୁଏ ।

ସୁରା, ମାଛ ମହୁ ଯେ ଖେଚଡି ମାଉଁସ     ଦୁଷ୍ଟଲୋକ ସକାଶୁଁ ହୋଇଛି ପ୍ରକାଶ
କାମ, ମୋହ, ଲୋଭ ବହିବା ଲୋକଙ୍କର     ଅଟନ୍ତି ଅବିଚ୍ଛିନ୍ନେ ଏମାନେ ଆହାର ।

କ୍ଷିରି ବାଢ଼ି ବିଷ୍ଣୁସମୀପେ ନାନା ପୁଷ୍ପ     ଦେଇଣ ପୂଜା କଲେ ହୁଅଇ ନିଷ୍ପାପ
ତହୁଁ ସ୍ୱର୍ଗଲୋକେ ବସଇ ସୁଖେ ଯାଇ     ଏହାକୁ ଛାଡି ଯାଗ କରନ୍ତିଟି କାଇଁ ।

ଯୁଧିଷ୍ଠିର ପୁଣି ପ୍ରଶ୍ନ ପଚାରିଲେ ଶରୀର ଧାରଣ ନିମିତ୍ତ ଆପଦ ସମୟରେ ହିଂସା ଆଚରଣ କଣ ସମର୍ଥନ ଯୋଗ୍ୟ କି ? କାରଣ ଆପଦ ସମୟରେ ଶରୀର ରକ୍ଷା ନିମିତ୍ତ ମନୁଷ୍ୟକୁ ହିଂସା କରିବାକୁ ଦରକାର ପଡିପାରେ । ଭୀଷ୍ମ ଉତ୍ତର ଦେଲେ ଆପତ୍ କାଳରେ ଶରୀର ଯେପରି ଗ୍ଲାନିଯୁକ୍ତ ବା ମୃତ୍ୟୁର ବଶୀଭୂତ ନହୁଏ ସେଥିପ୍ରତି ଦୃଷ୍ଟିରଖି କର୍ମ କରିବ । ସମର୍ଥ ହେଲେ ପୁଣି ଧର୍ମ ଆଚରଣ କରିବ ।

ଭୀଷ୍ମ ବୋଇଲେ ଆହେ ଅସମୟ କାଳେ ହିଂସା କର୍ମକରି ପୋଷିବ ଜୀବ ବଳେ
ଯେତେବେଳେ ବିପତ୍ତି ଅଲଗା ହୋଇବ ତେତେବେଳେ ହିଂସା କର୍ମକୁ ଛାଡିଦେବ ।

ବିଚକ୍ଷୁ ରାଜାଙ୍କର ଏହି ଉପଦେଶ ବିଚକ୍ଷୁ ଗୀତା ନାମରେ ପ୍ରଚଳିତ ।



ଜଣେ ରାଜାଥିଲେ । ସେ ଅପୁତ୍ରିକ । ପୁଅଟିଏ ହେଲେ ଲକ୍ଷେ ବୋଦାବଳି ଦେବାପାଇଁ ଦେବୀଙ୍କ ପାଖରେ ମାନସିକ କରିଥାନ୍ତି । ପ୍ରତିଦିନ ଗୋଟିଏ ବଳି ଦେବୀଙ୍କ ପାଖରେ ଦେଉଥାନ୍ତି । ଏପରି ଚାଲିଲା । ଲକ୍ଷେ ବଳି ଯେଉଁ ଦିନ ପୂରିବ ରାଜା ସେଦିନ ବଳି ପାଖରେ ଉପସ୍ଥିତ ଥା'ନ୍ତି । ଯେତେବେଳେ ବୋଦାକୁ ବଳି ଦେବାକୁ ଯାଆନ୍ତି, ବୋଦାଟି ହସିଲା ପରି ଦେଖାଗଲା । ରାଜା ଏଥିରେ ଭୟଭୀତ ହୋଇ ବୋଦାଟି ହସିବାର କାରଣ ଜାଣିବା ପାଇଁ ଦେବୀଙ୍କୁ ପ୍ରାର୍ଥନା କଲେ । ଦେବୀ କହିଲେ ଯେ ତାର କାରଣ ସେଇ ବୋଦା ହିଁ କହିବ ।

ଦେବୀଙ୍କ ଦୟାରୁ ରାଜାଙ୍କୁ ସ୍ୱପ୍ନରେ ବୋଦା ମଧ୍ୟ କଥା କହିଲା । ହସିବାର କାରଣ କହିବା ପରେ ବୋଦାଟି ଯେପରି ନିଶ୍ଚୟ ବଳି ପଡିବ - ଏକଥା ରାଜାଙ୍କୁ ଶପଥ କରାଇ ନେଲା । ରାଜା ହଁ ଭରିଲେ ।

ବୋଦା କହିଲା ଯେ ପୂର୍ବ ଜନ୍ମରେ ସେ ଗୋଟିଏ ଅପୁତ୍ରିକ ରାଜା ଥିଲା । ପୁଅ ହେଲେ ଲକ୍ଷେ ବୋଦାବଳି ଦେବାକୁ ସେ ମାନସିକ କରିଥିଲା । ଲକ୍ଷେ ବୋଦାବଳି ପଡିଲା । ସେହି ଅପରାଧରୁ ରାଜା ଏପରି ବୋଦା ହୋଇ ୯୯୯୯୯ ଥର ବଳି ପଡିଲାଣି । ଏଥରକ ବଳିପଡିଲେ ସେ ବୋଦା ଜନ୍ମରୁ ମୁକ୍ତ ହେବ । ତାରି ଭୁଲ ପରି ରାଜା ଭୁଲ କରୁଥିବା ଦେଖି ତାକୁ ହସ ମାଡ଼ିଲା । ସେ ଯେଉଁ ଅପକର୍ମ କରିଥିଲା ଆଜି ସେଥିପାଇଁ ଲକ୍ଷଥର ବୋଦା ହୋଇ ବଳି ପଡିଲା - ଆଜି ସେହି କଥାକୁ ସ୍ମରଣ କରି କହିଲା ଏ କର୍ମ ପାଇଁ ରାଜାଙ୍କୁ ଦଣ୍ଡ ଭୋଗ କରିବାକୁ ପଡ଼ିବ - ଏ କଥା ରାଜା ଭୁଲି ଯିବାରୁ ହସ ମାଡୁଛି ।

କାରଣଟି କହି ସାରିବା ପରେ ବୋଦାକୁ ବଳି ଦିଆଗଲା । ସେ ବୋଦା ଜନ୍ମରୁ ମୁକ୍ତ ହୋଇ ଭଗବାନଙ୍କ ନିକଟରେ ପହଞ୍ଚିଲା ।

*ବାୟାବାଣୀ....*

# ହାରିତ ଗୀତା

*(ହାରିତ ମୁନିଙ୍କ ଦ୍ୱାରା ପ୍ରତିପାଦିତ ସନ୍ୟାସୀଙ୍କ ସ୍ୱଭାବ ଆଚରଣ ଓ ଧର୍ମର ବର୍ଣ୍ଣନା : ଅଧ୍ୟାୟ-୨୭୭)*

ଯୁଧିଷ୍ଠିର ପଚାରିଲେ ହେ ପିତାମହ ପ୍ରକୃତିର ଉପରେ ପରଂବ୍ରହ୍ମଙ୍କର ଅବିନାଶୀ ପରମଧାମ ଅଛି । ସେଠାକୁ ଯେଉଁମାନେ ଗମନ କରିଥାଆନ୍ତି ସେମାନଙ୍କର ସ୍ୱଭାବ ଆଚରଣ କିପରି ହେବା ଉଚିତ ଓ କି ପ୍ରକାର କର୍ମ ସେମାନେ କରିବେ ? ଭୀଷ୍ମ ଏ ପ୍ରଶ୍ନର ଉତ୍ତରରେ ଶୁଣାଇଲେ 'ହେ ରାଜା ଯେଉଁ ପୁରୁଷ ମୋକ୍ଷ ଧର୍ମ ପାଳନରେ ତତ୍ପର, ମିତାହାରୀ ଓ ଜିତେନ୍ଦ୍ରିୟ ସେହି କେବଳ ଏହି ପରମଧାମକୁ ଯାଇଥାଏ । ପୂର୍ବକାଳରେ ହାରିତ ନାମରେ ଜଣେ ଜ୍ଞାନବାନ ଋଷି ଥିଲେ । ସେ ଏ ବିଷୟରେ ଯାହା ଉପଦେଶ ଦେଇଅଛନ୍ତି ତାହା ଶୁଣ । ଯେଉଁ ପୁରୁଷ ମୋକ୍ଷ ଚାହେଁ ସେ ହାନି ଲାଭରେ କୌଣସି ପ୍ରଭେଦ ଦେଖି ନଥାଏ । ସେ ମୁନି ବୃତ୍ତିରେ ଥାଏ । ସୁଯୋଗ ମିଳିଲେ ମଧ ସେ ଭୋଗର ଆକାଂକ୍ଷା କରିନଥାଏ । ଘରୁ ବାହାରିଯାଇ ସେ ସନ୍ୟାସ ଗ୍ରହଣ କରେ । ସେ ମନ ବାକ୍ୟ ବା ଚକ୍ଷୁରେ ଅନ୍ୟ କାହାର ଦୋଷ ଦେଖି ନଥାଏ । ପ୍ରତ୍ୟକ୍ଷରେ ବା ପରୋକ୍ଷରେ ସେ କାହାକୁ କଟୁବଚନ କହି ନଥାଏ । ଅନ୍ୟର କଟୁବଚନରେ ନିଜେ ଚୁପ୍‌ଚାପ ରହିଯାଏ । ସେ କାହାପ୍ରତି କ୍ରୋଧ କରେ ନାହିଁ ବା ଅହଂକାର ଦେଖାଏ ନାହିଁ । କେହି ତା ପ୍ରତି କ୍ରୁଦ୍ଧ ହେଲେ ମଧ ସେ ତାକୁ ପ୍ରିୟବଚନ କହିଥାଏ । ସମାଜରେ କୌଣସି ଲୋକର ସପକ୍ଷ ବା ବିପକ୍ଷରେ ନଥାଏ । ଲୋକ ଗହଳିଠାରୁ ଦୂରରେ ରହେ । ସେ ଭିକ୍ଷାକରି ଜୀବିକା ଅର୍ଜନ କରେ । ଆଗରୁ ନିମନ୍ତ୍ରିତ ହୋଇ ସେ ଭୋଜନ ନିମିତ୍ତ କେଉଁଠାକୁ ଯାଇ ନଥାଏ । ତା ଉପରେ କେହି ଧୂଳି ପକାଇଲା, କିଏ ମଇଳା ଫିଙ୍ଗିଦେଲା ସେଥିରେ ଆତ୍ମରକ୍ଷା ନିମିତ୍ତ ଯେତିକି କରିବାର କଥା ତହିଁରୁ ଅଧିକ ସେ କରିନଥାଏ । ପ୍ରତିକ୍ରିୟା ସ୍ୱରୂପ ସେ ନିଜେ କୌଣସି ଅପ୍ରିୟ ବଚନ କହି ନଥାଏ ବା ସେହିପରି କାର୍ଯ୍ୟ ନିଜେ ତା ପ୍ରତି କରିନଥାଏ । ସେ ଧୀରସ୍ଥିର ଭାବରେ କଥା କହେ । କାହାପ୍ରତି କଠୋର ହୋଇ ନଥାଏ ଓ ନିଜେ ଚିନ୍ତା ଶୂନ୍ୟ ହୋଇ ରହେ । ତୁଣ୍ଡରେ କେବେ ବଡ ବଡ କଥା କହିନଥାଏ । ଗୃହସ୍ଥର ଘରେ ରୋଷାଇର ଧୂଆଁ ବାହାରିବା ବନ୍ଦ ହେଲେ, ଶସ୍ୟ କୁଟୁଥିବା ଢ଼ିଙ୍କିର ଶବ୍ଦ ନ ଶୁଭିଲେ, ଚୁଲିର ନିଆଁ ଥଣ୍ଡା ହୋଇଯିବା ଜଣା ପଡିଲେ, ଘରର ଲୋକ ଖାଇ ସାରିବା ପରେ ଓ ଅନ୍ୟକୁ ଭୋଜନ ଦେବା ପାଇଁ ଘର ଭିତରକୁ ଥାଳି ଏଣେ ତେଣେ ଯିବା ସରିଗଲେ ସେହି ସମୟ ମୁନି ଓ ସନ୍ୟାସୀମାନଙ୍କର ସେ ଘରେ ଭିକ୍ଷା କରିବାର ଉତ୍କୃଷ୍ଟ ସମୟ ।

ନିଜର ଜୀବନ ଧାରଣ ନିମିତ୍ତ ଯେତିକି ଖାଦ୍ୟ ଦରକାର ସେ ସେତିକି ମାତ୍ର ସଂଗ୍ରହ କରନ୍ତି । ପେଟପୁରା ଭୋଜନ ମିଳିଯାଉ ଏହି ଆଶା ସେ କରିନଥାଏ । ଭିକ୍ଷା ମିଳିଗଲେ ଖୁବ୍ ଆନନ୍ଦିତ ହୁଏ

ନାହିଁ ବା ନ ମିଳିଲେ ମନରେ ଦୁଃଖ ଆଣି ନଥାଏ । ଲୋକମାନଙ୍କଠାରୁ ସେ କୌଣସି ଲାଭର ଆଶା ମନରେ ରଖି ନଥାଏ । ଯେଉଁଠାରେ ତାକୁ ଆଦର କରି ନେଇ ପୂଜା କରାଯାଏ ସେଠାରେ ସେ ଭୋଜନ କରେ ନାହିଁ । ଓଲଟି ତାକୁ ଆଦର ସତ୍‌କାର ମିଳିଲେ ତାର ନିନ୍ଦା କରିବାର କଥା । ଭିକ୍ଷାରେ ମିଳିବା ଖାଦ୍ୟର ଦୋଷଗୁଣ ସେ ବାରି ନଥାଏ । ଏହାର ନିନ୍ଦା ମଧ କରି ନଥାଏ କି ପ୍ରଶଂସା କରିନଥାଏ । ସେ ଏକାନ୍ତ ସ୍ଥାନରେ ବସେ ଓ ଶୁଏ । ଖାଲି ପଡିଥିବା ଘର, ବୃକ୍ଷର ତଳ, ଜଙ୍ଗଲ ବା ପର୍ବତରେ ଥିବା ଗୁମ୍ଫା ବା ସେମିତି କୌଣସି ଗୁପ୍ତ ସ୍ଥାନ ଦେଖି ସେଠାରେ ସେ ଅଜ୍ଞାତଭାବରେ ରହେ । ସେଠାରେ ଆତ୍ମଚିନ୍ତନ କରେ । ଲୋକମାନଙ୍କର ଅନୁରୋଧ ଓ ବିରୋଧରେ ସେ ସମାନ ପ୍ରତିକ୍ରିୟା ଦେଖାଇଥାଏ । ସ୍ଥିରଚିତ୍ତ ନିଶ୍ଚଳ ହୋଇ ସେ ରହେ । ନିଜ କର୍ମର ପୁଣ୍ୟ ବା ପାପ ସେ ଗ୍ରହଣ କରି ନଥାଏ । ସେ ମୁନି ସର୍ବଦା ତୃପ୍ତ ଓ ସନ୍ତୁଷ୍ଟ ହୋଇ ରହେ । ତାର ମୁଖ ଓ ଅନ୍ୟାନ୍ୟ ଇନ୍ଦ୍ରିୟମାନେ ପ୍ରସନ୍ନ ଦେଖାଯାଆନ୍ତି । ତା ମନରେ ଭୟ କେବେ ନ ଥାଏ । ସେ ପ୍ରଣବ ଜପ କରୁଥାଏ ଓ ବୈରାଗ୍ୟ ଆଶ୍ରୟ କରିଥିବା ଯୋଗୁଁ ମୌନ ଥାଏ । ପଞ୍ଚଭୂତର ଦେହ ଇନ୍ଦ୍ରିୟ ଆଦି ସବୁ ବିନାଶଶୀଳ । ପ୍ରାଣୀର ଜନ୍ମ ମରଣ ଲାଗି ରହିଛି । ଏସବୁ ଦେଖି ଓ ଚିନ୍ତାକରି ସେ ଶଙ୍ଖୁଡି ହେଉ ବା ନିଃଶଙ୍ଖୁଡି ହେଉ ଯାହା କିଛି ଭୋଜନ ମିଳିଯାଏ ସେଥିରେ ଜୀବନ ଯାତ୍ରା ନିର୍ବାହ କରେ । ସେ ଆତ୍ମଜ୍ଞାନ ନିମିତ୍ତ ଶାନ୍ତ ଚିତ୍ତ, ମିତାହାରୀ ଏବଂ ଜିତେନ୍ଦ୍ରିୟ ହେଲେ ବାସ୍ତବରେ ସନ୍ନ୍ୟାସୀ ପଦର ଯୋଗ୍ୟ ହୁଏ । ସନ୍ନ୍ୟାସୀ ତପସ୍ୱୀ ହୋଇଯାଏ । ସେ ଅବସ୍ଥାରେ ସେ ନିଜର ବାଣୀ, ମନ, କ୍ରୋଧ, ହିଂସା, ଉଦର ଓ ଉପସ୍ଥ (ଜନନେନ୍ଦ୍ରିୟ)ର ବେଗ ନିଜ ଆୟତ୍ତରେ ରଖିଥାଏ ଅର୍ଥାତ ଏ ସବୁକୁ ସେ ଦୋଷ ରହିତ କରି ରଖେ । ଅନ୍ୟଠାରୁ ମିଳିବା ନିନ୍ଦା ମଧ ତାର ମନରେ କୌଣସି ବିକାର ଆଣି ନଥାଏ । ପ୍ରଶଂସା ଓ ନିନ୍ଦାରେ ସେ ଉଦାସୀନ ରହେ, ସନ୍ନ୍ୟାସୀର ଏହା ପରମ ପବିତ୍ର ଆଚରଣ ଅଟେ ।

ଜିତେନ୍ଦ୍ରିୟ ଓ ମହାମନା ହୋଇ, ସବୁପ୍ରକାର ଅସଙ୍ଗହୋଇ ମଠ ବା କୁଟୀର ନ ତିଆରି କରି ସେ ଏକାଗ୍ରଚିତ୍ତ ହେବା ଦରକାର । ନିଜର ପୂର୍ବ ଆଶ୍ରମ, ନିଜର ଜଣାଶୁଣା ସ୍ଥାନକୁ ଯାଇ ରହିବା ଉଚିତ ନୁହେଁ । ଗୃହସ୍ଥ ଓ ବାନପ୍ରସ୍ଥୀମାନଙ୍କ ସାଙ୍ଗରେ କୌଣସି ସମ୍ପର୍କ ରଖିବ ନାହିଁ । ନିଜର ରୁଚି ଦେଖାଇବ ନାହିଁ । ଏମିତି ଭାବରେ ଥାଇ ଯେଉଁ ବସ୍ତୁ ମିଳିଯିବ ତାକୁ ନେବାର ମଧ ଆଗ୍ରହ ଦେଖାଇବ ନାହିଁ । ଏଥିରେ ମନରେ ଆନନ୍ଦ ପ୍ରକାଶ ମଧ ଅନୁଚିତ । ଏହି ପ୍ରକାର ସନ୍ନ୍ୟାସ ଧର୍ମ ଜ୍ଞାନୀମାନଙ୍କ ନିମିତ୍ତ ମୋକ୍ଷ ସ୍ୱରୂପ ଅଟେ । ଅଜ୍ଞାନୀମାନଙ୍କ ପାଇଁ ଏହା ବୃଥା ପରିଶ୍ରମ । ଯେଉଁ ଲୋକ ସମସ୍ତଙ୍କୁ ଅଭୟ ଦେଇ ଘର ଛାଡି ଏ ପ୍ରକାର ଆଚରଣ ଦେଖାଇ ଥାଏ ସେ ତେଜୋମୟ ଲୋକକୁ ଯାଇଥାଏ । ସେହି କେବଳ ଅନନ୍ତ ପରମଧାମ ପାଇବାକୁ ସକ୍ଷମ ହୋଇଥାଏ । ହାରିତ ଋଷିଙ୍କର ଏହି ଉପଦେଶ ହାରିତ ଗୀତା ନାମରେ ପରିଚିତ ।



# ବୃତ୍ର ଗୀତା

(ବ୍ରହ୍ମପ୍ରାପ୍ତିର ଉପାୟ ବିଷୟରେ ବୃତ୍ର ଓ ଶୁକ୍ର ସମ୍ବାଦ : ଅଧ୍ୟାୟ-୨୭୮-୨୭୯)

ଯୁଧିଷ୍ଠିର ଭୀଷ୍ମଙ୍କୁ କହିଲେ - ହେ ପିତାମହ ! ଲୋକେ ଆମ୍ଭମାନଙ୍କୁ ଧନ୍ୟ ଧନ୍ୟ କରୁଅଛନ୍ତି ମାତ୍ର ଆମ୍ଭମାନଙ୍କଠାରୁ ବଳି ଦୁଃଖୀ ବର୍ତ୍ତମାନ କେହି ନ ଥିବେ । ଦେବତାମାନଙ୍କ ଔରସରେ ଆମ୍ଭମାନଙ୍କର ଜନ୍ମ । ମନୁଷ୍ୟ ଜନ୍ମପାଇ ଆମ୍ଭେମାନେ ସମ୍ମାନିତ ହୋଇଛୁ । ତଥାପି ଆମ୍ଭମାନଙ୍କର ଦୁଃଖମୟ ଜୀବନ । ସଂସାରୀ ମନୁଷ୍ୟ ହୋଇ ଆମ୍ଭେମାନେ ଦୁଃଖ ପାଇଛୁ । କେବେ ଆମ୍ଭେ ସନ୍ନ୍ୟାସ ଅବଲମ୍ବନ କରି ଏ ଦୁଃଖରୁ ତ୍ରାହି ପାଇବୁ, ତାହା ଆମ୍ଭଙ୍କୁ ଜଣାନ୍ତୁ । ହେ ପିତାମହ ଜ୍ଞାନେନ୍ଦ୍ରିୟ ପାଞ୍ଚୋଟି ଚକ୍ଷୁ, କର୍ଣ୍ଣ, ନାସା ଜିହ୍ୱା, ତ୍ୱକ । କର୍ମେନ୍ଦ୍ରିୟ ପାଞ୍ଚୋଟି : ବାକ୍, ପାଣି, ପାଦ ପାୟୁ, ଉପସ୍ଥ । ପଞ୍ଚପ୍ରାଣ : ପ୍ରାଣ ଅପାନ ସମାନ ଉଦାନ ବ୍ୟାନ । ମନ ଓ ବୁଦ୍ଧି ଏ ମିଶି ସତର ତତ୍ତ୍ୱ । କାମ, କ୍ରୋଧ, ଲୋଭ, ଭୟ ଓ ସ୍ୱପ୍ନ ଏ ପାଞ୍ଚଟି ସଂସାରର ହେତୁ । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏ ପାଞ୍ଚ ବିଷୟ । ସତ୍ତ୍ୱ, ରଜ ଓ ତମ ଏ ତିନିଗୁଣ । ପାଞ୍ଚଭୂତ କ୍ଷିତି ଅପତେଜ, ମରୁତ, ବ୍ୟୋମ, ଅବିଦ୍ୟା, ଅହଂକାର ଓ କର୍ମ ଏମିତି ଆଠ ତତ୍ତ୍ୱ । ଏ ସବୁ ମିଶାଇଲେ ମୋଟ ଅଠତିରିଶ ତତ୍ତ୍ୱ ହେଉଛି । ମୋକ୍ଷ ବ୍ରତଧାରୀ ଏହି ଅଠତିରିଶରୁ ମୁକ୍ତ ହେଲେ ପୁର୍ନଜନ୍ମ ପାଇ ନ ଥାନ୍ତି । ରାଜ୍ୟ ଛାଡି ଆମ୍ଭେମାନେ କେତେବେଳେ ସେହି ଅବସ୍ଥା ପାଇପାରିବୁ, ଆମକୁ ଆପଣ ବୁଝାଇ କୁହନ୍ତୁ ।

ପ୍ରଶ୍ନର ଉତ୍ତରରେ ପିତାମହ କହିଲେ, ମହାରାଜ, ସଂସାରରେ ସବୁ ବସ୍ତୁର ସଂଖ୍ୟା ସୀମିତ । କିଛି ଅନନ୍ତ ନୁହେଁ । ପୁର୍ନଜନ୍ମ ମଧ୍ୟ ନଶ୍ୱର । ମନେରଖ ଜଗତରେ କୌଣସି ବସ୍ତୁ ଅଚଳ ବା ଚିରସ୍ଥାୟୀ ନୁହେଁ । ତୁମ୍ଭେ ଧାରଣା କରୁଛ ଐଶ୍ୱର୍ଯ୍ୟରୁ ଆସକ୍ତି ବଢ଼େ ତେଣୁ ଏହା ଦୋଷ ଯୁକ୍ତ । ତୁମ୍ଭର ଏ ଧାରଣା ଠିକ ନୁହେଁ । ତୁମ୍ଭେ ଧର୍ମକୁ ଜାଣିଛ । ତୁମ୍ଭେ ନିଜେ ଉଦ୍ୟମ କଲେ ସାଧନା ଦ୍ୱାରା ଶମଦମ ଆଦି ପ୍ରଭାବରେ କିଛି କାଳ ପରେ ମୋକ୍ଷ ପାଇବାକୁ ସକ୍ଷମ ହେବ । ଜୀବାତ୍ମା ପୁଣ୍ୟ ଓ ପାପ ଫଳରେ ସୁଖ ଦୁଃଖ ପାଇବାରେ ସ୍ୱାଧୀନ ନୁହେଁ । ଆଲୋକ ରଙ୍ଗିନ କାଚ ମଧ୍ୟରେ ପ୍ରବେଶ କରି ଭିନ୍ନ ଭିନ୍ନ ରଙ୍ଗରେ ପ୍ରକାଶ ପାଇଥାଏ । ସେମିତି ଜୀବାତ୍ମା ବର୍ଣ୍ଣ ବିହୀନ ଥିଲେ ମଧ୍ୟ ଅଜ୍ଞାନରେ ଆବୃତ ହୁଏ ଓ କର୍ମଫଳ ଦ୍ୱାରା ରଙ୍ଗ ପାଇଥାଏ ।

ଜୀବାତ୍ମା କର୍ମଫଳରେ ବିଭିନ୍ନ ଶରୀର ଧାରଣକରି ସେଇ ପ୍ରାଣୀର ଧର୍ମ ସ୍ୱୀକାର କରେ ଓ ବିଭିନ୍ନ ପ୍ରାଣୀମାନଙ୍କର ଶରୀର ଧାରଣ କରି ଭ୍ରମଣ କରୁଥାଏ । ଜୀବ ତତ୍ତ୍ୱଜ୍ଞାନ ପାଇଲେ ତାର ଅଜ୍ଞାନ ଅନ୍ଧକାର ଦୂର ହୋଇଯାଏ । ଏହି ତତ୍ତ୍ୱଜ୍ଞାନ ଫଳରେ ତାହା ହୃଦୟରେ ସନାତନ ବ୍ରହ୍ମର ପ୍ରକାଶ ହୋଇଥାଏ । ଋଷିମୁନିମାନଙ୍କର ମତରେ ବ୍ରହ୍ମପ୍ରାପ୍ତି କୌଣସି କ୍ରିୟାତ୍ମକ ଉଦ୍ୟମ ଦ୍ୱାରା

ହୋଇ ନଥାଏ । ଏଥିନିମିତ୍ତ ତୁମ୍ଭର ଦେବତାମାନଙ୍କର ଏପରିକି ସମସ୍ତ ଜଗତର ସେହି ଜୀବନ ମୁକ୍ତମାନଙ୍କୁ ଉପାସନା କରିବା ଆବଶ୍ୟକ । ମୁଁ ସେହିମାନଙ୍କୁ ନମସ୍କାର କରୁଛି ।

ଏହି ସଂକ୍ରାନ୍ତରେ ମୁଁ ଗୋଟିଏ ପୁରୁଣା କଥା ଶୁଣାଉଅଛି । ମନ ଦେଇ ଶୁଣ - ପୂର୍ବକାଳରେ ବୃତ୍ରାସୁର ଦେବତାମାନଙ୍କ ଦ୍ୱାରା ପରାସ୍ତ ହେଲା, ତାର ସମସ୍ତ ଐଶ୍ୱର୍ଯ୍ୟ କ୍ଷୟ ପାଇଗଲା । କେହି ତାହାର ସହାୟ ହୋଇ ରହିଲେ ନାହିଁ । ଦେବତାମାନେ ବୃତ୍ରାସୁରର ରାଜ୍ୟ ଛଡାଇ ନେଇଗଲେ । ଏପରି ଅବସ୍ଥାକୁ ଆସି ମଧ୍ୟ ସେ ଆସକ୍ତି ଶୂନ୍ୟ ହୋଇ ରହିଲା । ଶତ୍ରୁମାନଙ୍କ ମଧ୍ୟରେ ରହିଲେ ମଧ୍ୟ ତାର ଶୋକ ନଥିଲା । ଏହା ଦେଖି ତାଙ୍କ ଗୁରୁ ଆଚାର୍ଯ୍ୟ ଶୁକ୍ର ତାଙ୍କୁ ନିଶ୍ଚିନ୍ତ ଓ ଦୁଃଖ ଶୂନ୍ୟ ହୋଇ ରହିବାର କାରଣ ପଚାରିଲେ । ବୃତ୍ର ଉତ୍ତର ଦେଲା, ସତ୍ୟ, ତପ ପ୍ରଭାବରେ ନିଶ୍ଚିତ ଭାବରେ ଜୀବର ଜନ୍ମ ଓ ମୃତ୍ୟୁର କାରଣ ଏହା ମୁଁ ଜାଣିଅଛି । ତୁମ୍ଭେ ଏହା ଜାଣ । ସେଥିପାଇଁ ଏ ବିଷୟରେ ମୁଁ କୌଣସି ଆନନ୍ଦ ବା ଶୋକ ପ୍ରକାଶ କରୁନାହିଁ । ମୁଁ ଜାଣିଛି ଜୀବ ନିଜର ପାପକର୍ମ ଦ୍ୱାରା ବିବଶ ହୋଇ ନରକକୁ ଯାଏ । ପୁଣ୍ୟକର୍ମ ଦ୍ୱାରା ସ୍ୱର୍ଗକୁ ଯାଇ ଆନନ୍ଦ ଲାଭ କରେ । ସେଠାରେ ସ୍ୱର୍ଗ ହେଉ ବା ନରକ ହେଉ ତାର କର୍ମଫଳ ହେତୁ ଓ ଭୋଗର ନିର୍ଦ୍ଧାରିତ ସମୟ ଶେଷ ହୋଇଗଲେ ସେ ପୁଣି ସଂସାରରେ ଜନ୍ମଲାଭ ନେଇଥାଏ । ଏହିପରି ନିରନ୍ତର ଜନ୍ମ ମରଣ ଜୀବର ଲାଗି ରହିଥାଏ । ମୁଁ ଏସବୁ ଦେଖି ଆସୁଅଛି । ଶାସ୍ତ୍ରର ସିଦ୍ଧାନ୍ତ ହେଲା ଜୀବ ଯେପରି କର୍ମ କରିବ ସେହି ଅନୁସାରେ ଫଳ ଭୋଗ କରିବ । ବିଧାତାଙ୍କ ବିଧାନ ଅନୁସାରେ ଜୀବମାନେ ଏହିପରି ଜନ୍ମ ମରଣ ପାଉଥାଆନ୍ତି । ସୃଷ୍ଟି ଓ ପାଳନର ଆଶ୍ରୟ ହେଲା କାଳ । ସେହି ପରମାତ୍ମା ଓ ତାଙ୍କର ପ୍ରତିପାଦିତ ଧର୍ମ ମୁଁ ବୁଝିଅଛି । ବୃତ୍ରାସୁର ଏହିପରି ନିଜ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ । ଶୁଣିସାରି ଶୁକ୍ରାଚାର୍ଯ୍ୟ ନିଜ ଶିଷ୍ୟଙ୍କୁ କହିଲେ, ତୁମ୍ଭେ ବୁଦ୍ଧିମାନ ଅଟ । ତୁମ କଥା ଅସୁର ସ୍ୱଭାବର ବିପରୀତ । ଏପରି କଥା ତୁମ୍ଭେ କିପରି କହୁଛ । ତାଙ୍କ କଥାରେ ବୃତ୍ର ଉତ୍ତର ଦେଲା ତୁମେ ଦେଖିଛ ବିଜୟଲାଭ ପାଇବାକୁ ମୁଁ କି ଆସାଧ ତପସ୍ୟାମାନ ନ କରିଛି । ସେହି ତପସ୍ୟା ଫଳରେ ମୁଁ ଅଜେୟ ହୋଇପଡ଼ିଲି । ମୁଁ ତପସ୍ୟା କରି ପୁଣ୍ୟ ଅର୍ଜନ କଲି । ମୋର ନିଜକାର୍ଯ୍ୟ ଦ୍ୱାରା ସେହି ପୁଣ୍ୟ ନଷ୍ଟ ହୋଇଗଲା । ମାତ୍ର ମୁଁ ଧୈର୍ଯ୍ୟ ଧାରଣ କରି ସେଥିପାଇଁ ଦୁଃଖ ପ୍ରକାଶ କରିନାହିଁ । ଦେବତାମାନଙ୍କର ରାଜା ଇନ୍ଦ୍ରଙ୍କର ସହାୟତା ନିମିତ୍ତ ଆସିଥିବା ପୁରୁଷ ଶ୍ରେଷ୍ଠ ହରି ନାରାୟଣଙ୍କର ମୁଁ ଦର୍ଶନ ପାଇଅଛି । ସେହି ଭଗବାନ ବୈକୁଣ୍ଠ ପୁରୁଷ, ଅନନ୍ତ, ଶୁକ୍ଳ, ବିଷ୍ଣୁ, ସନାତନ, ମୁଞ୍ଜକେଶ, ହିରଣ୍ମୟ । ସେ ସମସ୍ତ ଭୂତମାନଙ୍କର ପିତାମହ ଭଗବାନଙ୍କୁ ନିବେଦିତ । ନିଶ୍ଚୟ ମୋର ସେହି ତପସ୍ୟାର କୌଣସି ଅଂଶ ବାକି ରହିଛି । ସେହି ପୁଣ୍ୟଫଳ ଯୋଗୁ ମୁଁ ବର୍ତ୍ତମାନ ମଧ୍ୟ କର୍ମଫଳ ବିଷୟରେ ତୁମ୍ଭଙ୍କୁ କେତେକ ପ୍ରଶ୍ନ ପଚାରିବାକୁ ଚାହିଁଅଛି । ଅଣିମା ଆଦି ଐଶ୍ୱର୍ଯ୍ୟ ଓ ମହତ୍ ବ୍ରହ୍ମ ଆଦି କେଉଁ ବର୍ଣ୍ଣରେ ପ୍ରତିଷ୍ଠିତ । ଏହି ଐଶ୍ୱର୍ଯ୍ୟ କିପରି ନଷ୍ଟ ହୋଇଯାଏ । ପ୍ରାଣୀ କେଉଁ ହେତୁରୁ ଜୀବନ ଧାରଣ କରିଥାଏ । କେଉଁ କାରଣରୁ ସେ କର୍ମରେ ପ୍ରବୃତ୍ତ ହୋଇଥାଏ । କେଉଁ ପରମ ଫଳ ପାଇଲେ ଜୀବ ଅବିନାଶୀ

ଓ ସନାତନ ରୂପରେ ପ୍ରତିଷ୍ଠିତ ହୋଇଥାଏ । କେଉଁ କର୍ମ ବା ଜ୍ଞାନ ଦ୍ୱାରା ଏହି ପ୍ରକାର ଫଳ ପାଇବାକୁ ସମର୍ଥ ହୋଇଥାଏ ଏହା ମୋତେ କୁହନ୍ତୁ । ବୃତ୍ରର ଏହିସବୁ ପ୍ରଶ୍ନ ଶୁଣି ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ପ୍ରଶ୍ନ ଗୁଡ଼ିକର ଯଥୋଚିତ ଉତ୍ତର ଦେବାକୁ ଯାଉଥିବା ସମୟରେ ସନତକୁମାର ସେଠାରେ ପହଞ୍ଚିଲେ । ତାଙ୍କୁ ଦେଖି ଶୁକ୍ରାଚାର୍ଯ୍ୟ ନିଜକୁ ଭାଗ୍ୟବାନ ମନେକରି ବୃତ୍ରାସୁର ଙ୍କ ପ୍ରଶ୍ନର ଉତ୍ତର ସେ ଦେବାକୁ ଅନୁରୋଧ କଲେ ।

ସନକ କୁମାରଙ୍କ ଉତ୍ତର ଏହି ପ୍ରକାରେ ଥିଲା :-

ଏହାଶୁଣି ସନକ କୁମାର ମହର୍ଷି    ବିଷ୍ଣୁଙ୍କର କଥା ଭାଷିଲେ ହସି ହସି
ଭୂତ, ସ୍ଥାପ, ସୃଷ୍ଟି, ସଂହାର ନାରାୟଣ    କରୁଅଛନ୍ତିଟି ହେ ବୃତ୍ରାସୁର ଜାଣ ।

ତପସ୍ୟାରେ, ଯାଗରେ ନପାଇ ବିଷ୍ଣୁଙ୍କୁ    ପାଇ ଯତ୍ନକଲେ ଇନ୍ଦ୍ରିୟ ସଂଯମକୁ
ଶତଶତ ଜନ୍ମରେ ଜୀବ ଶୁଦ୍ଧ ହୋଏ    ସୁକୃତ ଅଗ୍ନିରେ ଦହନ ହେଲେ ରାଏ ।

ଯେଉଁ ରୂପରେ ଲେକ କରନ୍ତି କରମ    ଯହିଁ ସବାଶରୁ ଯେ ହୁଅଇ କରମ
ଯାହାଠାରୁ ଯାଇ ରହନ୍ତି ଆଶ୍ରେକରି    ଏସବୁ ବତାଇ କହିବା ଦଣ୍ଡଧାରୀ ।

ପ୍ରଶ୍ନର ଉତ୍ତରରେ ଋଷି ଏହାକୁ ସବୁ ବତାଇଲେ :

ଅବ୍ୟୟ ଅକ୍ଷର ବୋଲାନ୍ତି ନାରାୟଣ    ଜଗତକୁ ସରଜିବାରେ ସେ କାରଣ
ଆକାଶ, ମହୀ, ସ୍ୱର୍ଗ ତାଙ୍କର ଶରୀର    ବୋଲି କରିହେ ମନେ କର ଦୈତ୍ୟେଶ୍ୱର ।

ରଜ, ତମ, ସତ୍ତ୍ୱ ଯାହାଙ୍କୁ ଜାଣ କହି    ତାଙ୍କ ବିନା ଆଉ ସଂସାରେ ଘଟିନାହିଁ ।
ପରମ ବ୍ରହ୍ମ, ତପ, ଯାଗ, ମୋକ୍ଷଫଳ    ଋତ୍ୱିଜ, ବ୍ରହ୍ମା, ବିଷ୍ଣୁ, ରୁଦ୍ର, ମହାକାଳ ।

ତାହାଙ୍କୁ ଟି କହନ୍ତି ଆହେ ବୃତ୍ରାସୁର ।    ଏକାହାରେ ସର୍ବ ପୁରଙ୍କ ସେ ଈଶ୍ୱର ।
ଏକୋ ହୋଇ କଶରେ ସପ୍ତ ବ୍ରହ୍ମାଣ୍ଡଟି    ରଖିଛନ୍ତି ଦେଖାଇ ନିଜ ମହିମାଟି ।

ଜ୍ଞାନବିନା ପ୍ରାଣିଏ ବିଷ୍ଣୁ ଜାଣିବାକୁ    ଏ ମହୀରେ ଅଛି କେ ନଆସେ ମନକୁ ।
ଏହି ରୂପେ ନାରାୟଣ ମହାତ୍ମା କଥା    ଶୁଣିଲ ତ ମୋହଠାରୁ ବୃତ୍ର ମହାରଥା ।

ବୃତ୍ର କୋଇଲେ ମୁହିଁ ଶୁଣି ତୁମ୍ଭ ବାଣୀ    ନିଷ୍ପାପ ହୋଇଲି ହେ ମୁହିଁ ଜାଣ ଋଷିମଣି ।

ଅର୍ଥାତ୍ : ଶ୍ରୀମାନ ଭଗବାନ, ନାରାୟଣ, ହରି, ଆଦି ଓ ଅନନ୍ତ ରହିତ । ଚରାଚର ପ୍ରାଣୀଙ୍କର ସେଇ ହିଁ ରଚନା କରନ୍ତି । ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କ ମଧରେ ସେହିଁ କ୍ଷର ଓ ଅକ୍ଷର ରୂପରେ ବିରାଜମାନ । ସମଗ୍ର ପୃଥିବୀ ଭଗବାନଙ୍କର ଦୁଇ ଚରଣ, ସ୍ୱର୍ଗଲୋକ ତାଙ୍କର ମସ୍ତକ, ଚାରିଦିଗ ତାଙ୍କର ଚାରି ଭୁଜ, ଆକାଶ ତାଙ୍କର କାନ, ତେଜସ୍ୱୀ ସୂର୍ଯ୍ୟ ତାଙ୍କର ନେତ୍ର, ଚନ୍ଦ୍ରମା ତାଙ୍କର

ମନ, ଜଳ ତାଙ୍କର ରସନା ଇନ୍ଦ୍ରିୟ ଓ ନିତ୍ୟ ଜ୍ଞାନବୁଦ୍ଧି ତାଙ୍କର ବୁଦ୍ଧି ବା ମହତତ୍ତ୍ୱ ଅଟେ । ସମସ୍ତ ଗ୍ରହ ତାଙ୍କର ଦୁଇ ଭ୍ରୂରୁ ମଧ୍ୟରେ ଅବସ୍ଥିତ । ତାଙ୍କର ନେତ୍ରରୁ ନକ୍ଷତ୍ରମଣ୍ଡଳ ପ୍ରକଟ ହୋଇଅଛି । ତାଙ୍କ ଦୁଇ ଚରଣ ଉପରେ ସମଗ୍ର ପୃଥିବୀ ଅବସ୍ଥାନ କରୁଅଛି । ତୁମ୍ଭେ ତାଙ୍କୁ ସମ୍ପୂର୍ଣ୍ଣ ଭୂତସ୍ୱରୂପ ଏହି ଜଗତର ତପସ୍ୟାର ଆଦିକାରଣ ଓ ପରମେଶ୍ୱର ବୋଲି ଜାଣିରଖ ।

କର୍ମର ଫଳ ତ୍ୟାଗକୁ ସନ୍ନ୍ୟାସ କହନ୍ତି । ଏହାର ଫଳ ସେହି ଅବିନାଶୀ ପରମାତ୍ମା । ବେଦ ମନ୍ତ୍ର ତାଙ୍କର ରୋମ ଓ ପ୍ରଣବ (ଓଁକାର) ତାଙ୍କର ବାଣୀ । ସେହି ପରମାତ୍ମା ଶ୍ରୁତି (ବେଦ) ଶାସ୍ତ୍ର ଋତ୍ୱିଜମାନଙ୍କ ସହିତ ଯଜ୍ଞ ଅଟନ୍ତି । ସେ ବ୍ରହ୍ମା, ବିଷ୍ଣୁ, ଅଶ୍ୱିନୀ କୁମାର, ଇନ୍ଦ୍ର, ମିତ୍ର, ବରୁଣ, ଯମ ଓ କୁବେର ରୂପରେ ପ୍ରକଟିତ । ପୃଥକ ପୃଥକ ଥିଲେ ମଧ୍ୟ ସେ ସବୁଠାରେ ଏକତାରେ ବଦ୍ଧ । ଜୀବ ବିଶେଷ ଜ୍ଞାନ ବଳରେ ଏହି ପରମାତ୍ମାଙ୍କର ସାକ୍ଷାତ ପାଇପାରିବ । ପରମେଶ୍ୱରଙ୍କର ଜଗତ ସୃଷ୍ଟିକୁ ତୁମ୍ଭେ ହଜାର ବାମ୍ପୀ (ଜଳାଶୟ) ଭାବରେ ଗ୍ରହଣ କର । ପ୍ରତି ବାମ୍ପୀର ଲମ୍ବ ପାଞ୍ଚଶ ଯୋଜନ, ଓସାର ସେତିକି ଓ ଏହାର ଗଭୀରତା ମଧ୍ୟ ସେଇପରି । କେହି ଏଥିରେ ପ୍ରବେଶ କରି ପାରେନାହିଁ । ଏହାର ପାଣି ଉଠେଇବାକୁ ଯେତେ ସମୟ ଲାଗିବ ସଂସାରର ସୃଷ୍ଟି ସ୍ଥିତି, ପ୍ରଳୟ ସେହି ସମୟ ମଧ୍ୟରେ ହୋଇଥାଏ । ଏ ବାମ୍ପୀର ପାଣି ଶୁଖାଇବା ଯେପରି ଅସମ୍ଭବ ବିନା ଜ୍ଞାନ ଲାଭରେ ସଂସାର ପାଶରୁ ମୁକ୍ତ ହେବା ସେହିପରି ଅସାଧ୍ୟ ।

ସହସ୍ର ଯୋନିରେ ଜନ୍ମଗ୍ରହଣ କରି ଜୀବ ଶେଷରେ ମନୁଷ୍ୟ ରୂପରେ ଜନ୍ମ ନେଇ କେବେହେଲେ ସିଦ୍ଧି ପାଇପାରେ । ମନୁଷ୍ୟ ଜନ୍ମରେ କେବଳ ମୋକ୍ଷର ସୁଯୋଗ ଅଛି । ଅନ୍ୟ ସବୁ ଜନ୍ମରେ ଜୀବ କେବଳ ସୁଖ ଓ ଦୁଃଖ ଭୋଗ କରୁଥାଏ । ଯେଉଁ ସାଧକ ସର୍ବଦା ମନ ବିଶୁଦ୍ଧ କରି ରଖିଥାଏ ସେହି କେବଳ ଅନୁସନ୍ଧାନ ଦ୍ୱାରା ପରମଗତି ପାଇ ପାରିଥାଏ । ସେହି ଅବିକାରୀ, ଦୁର୍ଲ୍ଲଭ ଓ ସନାତନ ପଦ ପାଇଲେ ଜୀବ ସେହିଠାରେ ଅଧିଷ୍ଠିତ ହୋଇଯାଏ । ବୃତ୍ରାସୁର ଏହା ଶଣି ନିଜର ସମସ୍ତ ପାପ କଳୁଷ ନଷ୍ଟ ହୋଇଥିବାର ପ୍ରକାଶ କରି କହିଲେ, ମହାତେଜସ୍ୱୀ ଅନନ୍ତ ଏବଂ ସର୍ବବ୍ୟାପୀ ବିଷ୍ଣୁଙ୍କର ଅମିତ ଶକ୍ତିଶାଳୀ ସଂସାରଚକ୍ର ଚାଲୁ ରହିଛି । ସୃଷ୍ଟିର ଆରମ୍ଭ, ବିଷ୍ଣୁଙ୍କର ସନାତନ ସ୍ଥାନରୁ । ସେହି ପରମାତ୍ମା ବିଷ୍ଣୁଙ୍କଠାରେ ସମଗ୍ର ଜଗତ ପ୍ରତିଷ୍ଠିତ ହୋଇଅଛି । ଏତିକି କହିସାରି ବୃତ୍ର ନିଜ ଆତ୍ମାକୁ ପରମାତ୍ମାଙ୍କ ସହିତ ସଂଯୋଗ କଲେ ଓ ସେହି ପରମାତ୍ମାଙ୍କୁ ଧ୍ୟାନ କରୁ କରୁ ନିଜର ଜୀବନ ତ୍ୟାଗକଲେ । ତାଙ୍କୁ ପରମାରାଧ୍ୟ ପରମେଶ୍ୱରଙ୍କର ପରମଧାମ ପ୍ରାପ୍ତ ହେଲା । ଯୁଧିଷ୍ଠିର ଭୀଷ୍ମଙ୍କଠାରୁ ଏସବୁ ଶୁଣିସାରି କହିଲେ :-

ଯୁଧିଷ୍ଠିର ବୋଇଲେ ବୃତ୍ର ଅସୁରକୁ
କହିଲେଟି ସନତ କୁମାର ଯାହାକୁ
ବିଷ୍ଣୁ ବୋଲି କରି ସେ ବିଷ୍ଣୁଟିକି ଏହି
ବସୁଦେବର ସୁତ କହ ଟା ବତାଇ ।

ଭୀଷ୍ମବୋଇଲେ ଆହେ ସନତ କୁମାର
ଯେ ବିଷ୍ଣୁ କହିଲେ ସେ ବଡ ମନୋହର
ସେ ବିଷ୍ଣୁଙ୍କ ଚତୁର୍ଥ ଭାଗୁଁ ଅଧେଭାଗ
କୃଷ୍ଣ ବୋଲିକରି ଜାଣ ହେ ମହାଭାଗ
ଚତୁର୍ଥ ଭାଗୁଁ ଯେଉଁ ଅଧକ ରହିଲେ
ସେ ବିଷ୍ଣୁ ପାଳନ କରନ୍ତି ଜାଣ ଭଲେ
ଦିନ ଅନ୍ତରେ ସେ ଯେ ଜଳରେ ଶୁଅନ୍ତି
ରାତ୍ର ଅନ୍ତେ ଜଗତ ସର୍ଜନା କରନ୍ତି ।
ଯୁଧିଷ୍ଠିର ବୋଇଲେ ବୃତ୍ରାସୁର ଯୋଗ
ସାଧିଣ ପାରଲେ ବ୍ରହ୍ମକୁ ମହାଭାଗ ।
ଆମ୍ଭେ ତ ଯୋଗ ସାଧନକୁ ନାହିଁ କରି
ଆମ୍ଭରତ ଗତି ନୋହିବ ସେହିପରି
କି କରିବୁ ଦେବେ କହ ହେ ପିତାମହ
ନରକ ଭୟେ ଆମ୍ଭେ ହେଉଅଛୁ ମୋହ ।
ଭୀଷ୍ମ ବୋଇଲେ ଏହା ସତ୍ୟବନ୍ତ ତୁମ୍ଭେ
ଦେବ ଲୋକେ ବସିବ ଜାଣିଅଛୁ ଆମ୍ଭେ ।
ଦେବଙ୍କର ସଙ୍ଗତେ ବ୍ରହ୍ମେହେବ ଲୀନ
ଆହେ ଯୁଧିଷ୍ଠିର ଏଥିରେ ନାହିଁ ଆନ ।

ଏହି ଭାବରେ ସନ୍ନ୍ୟାସ ଅବଲମ୍ବନ ନକରି ରାଜକାର୍ଯ୍ୟରେ ଲିପ୍ତ ରହି ମୋକ୍ଷଗତି ପାଇବାର ମାର୍ଗ ପିତାମହ ଭୀଷ୍ମ ରାଜା ଯୁଧିଷ୍ଠିରଙ୍କୁ ବୁଝାଇଲେ ଓ ତାଙ୍କ ଶଙ୍କାର ସମାଧାନ କଲେ । ଏହା ବୃତ୍ରଗୀତା ନାମରେ ପରିଚିତ ।



ପ୍ରତ୍ୟକ୍ଷାନୁଭୂତି ହେଉଛି ଧର୍ମର ମୂଳଦୁଆ । ଧର୍ମ କାହିଁକି, ପୃଥିବୀରେ ପ୍ରତ୍ୟେକ theory ପ୍ରତ୍ୟାକ୍ଷାନୁଭୂତି ଉପରେ ପ୍ରତିଷ୍ଠିତ । ବିଜ୍ଞାନ ଜଗତରେ ଜଣେ ଜଣେ ବୈଜ୍ଞାନିକ, ଗୋଟିଏ ଗୋଟିଏ ଉଦ୍ଭାବନ କରି ଯାଇଛନ୍ତି । ଉଦ୍ଭାବିତ ପଦାର୍ଥର ପ୍ରତ୍ୟକ୍ଷାନୁଭୂତି ସେମାନେ କରିଥିଲେ ଓ ବର୍ତ୍ତମାନ ସାରା ଜଗତ ମଧ ପ୍ରତ୍ୟକ୍ଷାନୁଭୂତି କରୁଛି । ଧର୍ମ ଜଗତରେ ସେଭଳି ମହାପୁରୁଷମାନେ ପ୍ରତ୍ୟକ୍ଷାନୁଭୂତି କରି ଯାହା ଲେଖି ଯାଇଛନ୍ତି ସେଗୁଡିକର ଅନୁସରଣ କଲେ ଆପଣ ସତ୍ୟର ପ୍ରତ୍ୟକ୍ଷାନୁଭୂତି କରି ପାରିବେ । ଶାସ୍ତ୍ର ପୁରାଣ ସବୁ ପ୍ରତ୍ୟକ୍ଷାନୁଭୂତି ଉପରେ ଲେଖା ହୋଇଛି । ସେ ସବୁ ପଢ଼ିଲେ ଓ ଅନୁଭବ କଲେ ଧୀରେ ଧୀରେ ଆପଣଙ୍କ ମନରୁ ଅବିଶ୍ୱାସର ପରଦା ଘୁଞ୍ଚିଯିବ ଓ ଶେଷରେ ସତ୍ୟ ଉଦ୍ଭାସିତ ହେବ ।

"ଶ୍ରୀକୃଷ୍ଣ ଭଜନେ ସବେ ଅଧିକାରୀ
କୁଳେର ଗରବ ନାହିଁ
କହେ ପ୍ରେମାନନ୍ଦ ଯେ କରେ ଗରବ
ନିତାନ୍ତ ମୂରୁଖ ସେଇ ॥"

*ଚାପାବାଣୀ....*

# ପରାଶର ଗୀତା

*(ମୁନି ପରାଶରଙ୍କର ରାଜା ଜନକଙ୍କୁ କଲ୍ୟାଣ ପ୍ରାପ୍ତି ନିମିତ୍ତ ଉପଦେଶ)*

୧) କର୍ମ ଫଳର ଅନିବାର୍ଯ୍ୟତା, ପୁଣ୍ୟକର୍ମରୁ ଲାଭ;

୨) ଧର୍ମରେ ଉପାର୍ଜିତ ଧନର ଶ୍ରେଷ୍ଠତା, ଅତିଥି ସତ୍କାରର ମହତ୍ୱ, ପାଞ୍ଚପ୍ରକାର ଋଣ ସୁଝିବାର ବିଧି, ଭଗବତ ସ୍ତବନର ମହିମା, ସଦାଚାର ଓ ଗୁରୁଜନମାନଙ୍କ ସେବାରେ ଲାଭ;

୩ ବର୍ଣ୍ଣାଶ୍ରମରେ ସେବା ବୃତ୍ତିର ପ୍ରଧାନତା, ସେବା ବୃତ୍ତିର ମହତ୍ତ୍ୱ;

୪) ବର୍ଣ୍ଣାଶ୍ରମର ବିଭିନ୍ନ ଜୀବିକା, ନିନ୍ଦନୀୟ କର୍ମତ୍ୟାଗ ନିମିତ୍ତ ଉପଦେଶ, ମନୁଷ୍ୟର ଅସୁରଭାବର ଉତ୍ପତ୍ତି, ସ୍ୱଧର୍ମରେ କର୍ତ୍ତବ୍ୟ ପାଳନର ଆଦେଶ;

୫) ବିଷୟାସକ୍ତ ମନୁଷ୍ୟର ପତନ, ତପୋବଳର ଶ୍ରେଷ୍ଠତା, ଦୃଢ଼ତା ପୂର୍ବକ ସ୍ୱଧର୍ମ ପାଳନର ନିର୍ଦ୍ଦେଶ;

୬) ବିଭିନ୍ନ ବର୍ଣ୍ଣର ଉତ୍ପତ୍ତି, ନାନା ବର୍ଣ୍ଣର ବିଶେଷ ଓ ସାମାନ୍ୟ ଧର୍ମ, ସଦ୍ କର୍ମର ଶ୍ରେଷ୍ଠତା, ହିଂସା ରହିତ ଧର୍ମର ବର୍ଣ୍ଣନା;

୭) ନାନା ପ୍ରକାର ଧର୍ମ ଓ କର୍ତ୍ତବ୍ୟର ଆଲୋଚନା ଓ ଶେଷରେ;

୮) ରାଜା ଜନକଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ବିଶଦ ଭାବରେ ଏହି ଗୀତାରେ ୨୯୦ ଅଧ୍ୟାୟରୁ ୨୯୮ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇଅଛି ।

ପରାଶର ଗୀତାର ବର୍ଣ୍ଣାଶ୍ରମରେ ସେବାବୃତ୍ତିର ପ୍ରଧାନତା ଓ ବିଭିନ୍ନ ଜୀବିକାର ବର୍ଣ୍ଣନା କରାଯାଇଅଛି । ଏହି ପ୍ରସଙ୍ଗରେ ସାମାନ୍ୟ ଆଲୋଚନା ଆବଶ୍ୟକ ମନେହୁଏ । ଶ୍ରୀମଦଭଗବଦ ଗୀତାର ଚତୁର୍ଥ ଅଧ୍ୟାୟର ୧୩ଶ ଶ୍ଳୋକରେ ଅଛି -

*ଚାତୁର୍ବର୍ଣ୍ୟଂ ମୟାସୃଷ୍ଟଂ ଗୁଣକର୍ମ ବିଭାଗଶଃ*
*ତସ୍ୟ କର୍ତ୍ତାରମପି ମାଂ ବିଦ୍ୟକର୍ତ୍ତାରମବ୍ୟୟମ୍ ।*

ଅର୍ଥାତ୍ : ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର ଏହି ଚାରି ବର୍ଣ୍ଣକୁ ଆମ୍ଭେ ଗୁଣକର୍ମ ବିଭାଗ ଅନୁସାରେ ସୃଷ୍ଟି କରିଅଛୁ । ଆମ୍ଭେ ଏ ସବୁର ସୃଷ୍ଟିକର୍ତ୍ତା ହେଲେ ହେଁ ଆମ୍ଭକୁ ଅକର୍ତ୍ତା ଓ ବିକାର ରହିତ ବୋଲି ଜାଣ ।

ବର୍ଣ୍ଣାଶ୍ରମଭେଦ : ଅର୍ଜୁନଙ୍କର ସନ୍ଦେହ କେହି ସକାମଭାବରେ, କେହି ବା ନିଷ୍କାମ ଭାବରେ ଉପାସନା କରନ୍ତି । ଏପରି କର୍ମବିଚିତ୍ରତା କାହିଁକି ? ଏପରି କର୍ମ କରୁଥିବା ବ୍ରାହ୍ମଣାଦି ଚାରି ବର୍ଣ୍ଣର କର୍ତ୍ତା ତୁମେ । ଏପରି ଅବସ୍ଥାରେ ତୁମଠାରେ ପକ୍ଷପାତୀତା ନାହିଁ - ଏହା କିପରି ଜଣାଯିବ ? ଏହି

ପ୍ରକାର ସନ୍ଦେହର ଉତ୍ତରରେ ଭଗବାନ କହୁଅଛନ୍ତି ପ୍ରକୃତିଭେଦ ଅନୁସାରେ ବର୍ଣ୍ଣଭେଦ ଓ କର୍ମଭେଦ ଆମ୍ଭେ କରିଅଛୁ ଏହା ସତ୍ୟ ମାତ୍ର ଆମ୍ଭେ ଏହାର କର୍ତ୍ତା ହେଲେ ହେଁ ତହିଁରେ ଲିପ୍ତ ହେଉ ନାହିଁ । ତେଣୁ ଆମ୍ଭେ ଅକର୍ତ୍ତା ଏବଂ ଅବ୍ୟୟ ଅର୍ଥାତ୍ ଏସବୁ କଲେ ମଧ ଆମ୍ଭର କୌଣସି ବିକାର ହୁଏ ନାହିଁ ।

ଏଠାରେ ଭଗବାନ କହିଛନ୍ତି ଗୁଣ ଓ କର୍ମର ବିଭାଗ ଅନୁସାରେ ଆମ୍ଭେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ଏହି ଚାରିବର୍ଣ୍ଣ ସୃଷ୍ଟି କରିଅଛୁ । ସତ୍ୱ ରଜ ଓ ତମ - ପ୍ରକୃତିର ଏହି ତିନିଗୋଟି ଗୁଣ । ସତ୍ୱଗୁଣ ପ୍ରଧାନ ବ୍ରାହ୍ମଣ-ଶମ, ଦମ, ତପସ୍ୟା, ଇନ୍ଦ୍ରିୟ ନିଗ୍ରହ, ଅଧୟନ, ଅଧ୍ୟାପନା ପ୍ରଭୃତି ତାଙ୍କର କର୍ମ । ସତ୍ୱ ଓ ରଜଃ ପ୍ରଧାନ କ୍ଷତ୍ରିୟ-ଶୌର୍ଯ୍ୟ ତେଜଃ ପ୍ରଭୃତି ତାଙ୍କର କର୍ମ । ରଜଃ ଓ ତମୋଗୁଣ ପ୍ରଧାନ ବୈଶ୍ୟ - କୃଷି ବାଣିଜ୍ୟ ପ୍ରଭୃତି ତାଙ୍କର କର୍ମ । ତମୋଗୁଣ ପ୍ରଧାନ ଶୁଦ୍ର- ପୂର୍ବୋକ୍ତ ତିନି ବର୍ଣ୍ଣର ସେବା ତାଙ୍କର କର୍ମ । ଅନାଦି କାଳରୁ ଏ ଦେଶରେ ବର୍ଣ୍ଣଭେଦ ପ୍ରଚଳିତ ଅଛି । ବୈଦିକ ଯୁଗରେ ଏ ଦେଶରେ ବ୍ରାହ୍ମଣାଦି ବର୍ଣ୍ଣଭେଦ ଥିଲା । ଏହା ଋଗବେଦର ପୁରୁଷ ସୂକ୍ତ ମନ୍ତ୍ରରୁ ଜଣାଯାଏ । ସେ ଋକ୍ ବା ମନ୍ତ୍ରଟି ଏହିପରି :

*ବ୍ରାହ୍ମଣୋସ୍ୟ ମୁଖ ମାସୀଦ୍ ବାହୁ ରାଜନାଃ କୃତଃ*
*ଊରୁ ତଦସ୍ୟ ଯଦ୍ ବୈଶ୍ୟଃ ପଦ୍‌ଭ୍ୟାଂ ଶୁଦ୍ରୋଽଜାୟତ ।*

ବ୍ରାହ୍ମଣ ଏହାଙ୍କର (ସୃଷ୍ଟିକର୍ତ୍ତା ପୁରୁଷଙ୍କର) ମୁଖ ହେଲେ, କ୍ଷତ୍ରିୟକୁ ବାହୁ କରାଗଲା । ବୈଶ୍ୟ ଏହାଙ୍କର ଊରୁ, ପାଦରୁ ଶୁଦ୍ର ଜାତ ହେଲେ । ଏଥିରୁ ବୁଝିବାକୁ ହେବ ନାହିଁ ଯେ ମନୁଷ୍ୟ ସୃଷ୍ଟିର ଆରମ୍ଭରୁ ଏପରି ବିଭିନ୍ନ ବର୍ଣ୍ଣର ସୃଷ୍ଟି ହୋଇଅଛି । ବୈଦିକ ସୂତ୍ରସବୁ ଅନେକ ସ୍ଥଳରେ ରୂପକ ଆକାରରେ ଲିଖିତ ହୋଇଅଛି । ବିଶେଷତଃ ଏହି ପୁରୁଷସୂକ୍ତ ସଂପୂର୍ଣ୍ଣରୂପେ ରୂପକ । ଏହାର ପ୍ରଥମ ଋକ ଓଁ ସହସ୍ରଶୀର୍ଷାଃ ପୁରୁଷଃ ସହସ୍ରାକ୍ଷ ସହସ୍ରପାତ ଇତ୍ୟାଦି ଅର୍ଥାତ୍ ପୁରୁଷଙ୍କର ଅସଂଖ୍ୟା ଶିର, ଅସଂଖ୍ୟ ଚକ୍ଷୁ ଓ ଅସଂଖ୍ୟ ପାଦ - ବ୍ରହ୍ମାଣ୍ଡବ୍ୟାପୀ ଅସଂଖ୍ୟ ଲୋକଙ୍କର ସମଷ୍ଟିକୁ ଯେ ପୁରୁଷରୂପେ କଳ୍ପନା କରାଯାଇଅଛି ଏହା ଏଥିରୁ ସହଜରେ ଅନୁମିତ ହୁଏ । ସେହିପରି ଏହି ସୂତ୍ରର ପରବର୍ତ୍ତି ଋକ ମାନଙ୍କରେ ଯଜ୍ଞଛଳରେ ଯେଉଁ ଯେଉଁ ସୃଷ୍ଟି ପ୍ରକ୍ରିୟା ବର୍ଣ୍ଣିତ ହୋଇଅଛି ତାହା ଯେ ରୂପକ ଏଥିରେ ଅଣୁମାତ୍ର ସନ୍ଦେହର ଅବକାଶ ନାହିଁ । ତେଣୁ ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ଇତ୍ୟାଦି ଋକର ଅର୍ଥ ସମାଜର ଯେଉଁମାନେ ମୁଖ ସ୍ୱରୂପ ସେମାନେ ବ୍ରାହ୍ମଣ, ଯେଉଁମାନେ ବାହୁସ୍ୱରୂପ ସେମାନେ କ୍ଷତ୍ରିୟ, ଯେଉଁମାନେ ଊରୁ ସ୍ୱରୂପ ସେମାନେ ବୈଶ୍ୟ ଓ ଯେଉଁମାନେ ପାଦସ୍ୱରୂପ ସେମାନେ ଶୁଦ୍ର । ମୁଖ, ବାହୁ, ଊରୁ, ପାଦ - ଏହି ଚାରି ଅବୟବ ବ୍ୟତୀତ ଯେପରି କୌଣସି ଲୋକର ଅବସ୍ଥିତି ଅସମ୍ଭବ, ସେହିପରି ଏହି ଚାରିବର୍ଣ୍ଣର ଅଭାବରେ ସମାଜରେ ମାନବଜାତିର ଅବସ୍ଥିତି ଅସମ୍ଭବ । ଏହା ବୋଲି ମନୁଷ୍ୟ ଜାତିର ସୃଷ୍ଟି ଆରମ୍ଭରେ ଭଗବାନ ତାଙ୍କର

ବିଶିଷ୍ଟ ଅବୟବମାନଙ୍କରୁ ବ୍ରାହ୍ମଣାଦି ଚାରିବର୍ଣ୍ଣର ଉତ୍ପତ୍ତି କରିଥିଲେ ଏପରି କଳ୍ପନା ଅସମ୍ଭବ ଓ ବିବେକ ବିରୁଦ୍ଧ । ଏହି ବର୍ଣ୍ଣବିଭାଗ ଏକା ଆମ ଭାରତବର୍ଷରେ ନାହିଁ, ପୃଥିବୀର ସବୁଦେଶରେ ଏହାର ପ୍ରଚଳନ ଅଛି । ପ୍ରତ୍ୟେକ ଦେଶରେ କେତେକ ଜ୍ଞାନନିଷ୍ଠ ଈଶ୍ୱର ଭାବାପନ୍ନ ସାଧୁ ଅଛନ୍ତି । କେତେକ ଦେଶ ରକ୍ଷକ ବୀର ଅଛନ୍ତି, କେତେକ ବ୍ୟବସାୟୀ କୃଷିକାରୀ ଓ ପଶୁପାଳକ ଅଛନ୍ତି ଏବଂ କେତେକ ଶ୍ରମଜୀବୀ ଭୃତ୍ୟ ଶ୍ରେଣୀର ଲୋକ ଅଛନ୍ତି । ଏ ଚାରି ଶ୍ରେଣୀର ଲୋକ ନ ଥିଲେ ମାନବ ସମାଜ ତିଷ୍ଠିପାରେ ନାହିଁ । ଏହା ହିଁ ଶଂସିତ ଶଙ୍କର ଭାବ ।

ପ୍ରଥମେ ଏହି ଶ୍ରେଣୀ ବିଭାଗ ଗୁଣ ଓ କର୍ମ ଉପରେ ପ୍ରତିଷ୍ଠିତ ଥିଲା । ପରବର୍ତ୍ତୀ କାଳରେ ଏହା ବଂଶଗତ ହେବାରୁ ଜାତି ବିଭାଗ ଆରମ୍ଭ ହେଲା । ତେଣୁ ସମାଜ ବିଶୃଙ୍ଖଳ ହୋଇଗଲା । ଏବେ ମଧ୍ୟ ଦେଖାଯାଏ ବ୍ରାହ୍ମଣର ପୁତ୍ର ଶୁଦ୍ରର କର୍ମ କଲେହେଁ ସେ ବ୍ରାହ୍ମଣ ରୂପରେ ପରିଚିତ ହେଉଅଛି । ଶୁଦ୍ର ବ୍ରାହ୍ମଣୋଚିତ ଜ୍ଞାନ କର୍ମର ଅନୁଷ୍ଠାନ କଲେହେଁ ସେ ଶୁଦ୍ର ଭାବରେ ସମାଜରେ ଉପେକ୍ଷିତ ହେଉଅଛି । ଏହା ହିଁ ସମାଜର ଅବନତିର କାରଣ ।

ଚତୁର୍ବର୍ଣ୍ଣ୍ୟଂ ମୟାସୃଷ୍ଟ : ଏ ଶ୍ଳୋକ (୪/୧୩)ରେ ଭଗବାନ କହୁଅଛନ୍ତି ଗୁଣକର୍ମର ବିଭାଗ ଅନୁସାରେ, ଆମ୍ଭେ ଚାରି ବର୍ଣ୍ଣର ସୃଷ୍ଟି କରିଅଛୁ । ପ୍ରଥମେ 'କର୍ମ' କଥା ବିଚାର କରାଯାଉ । ଜନ୍ମ ପରେ ମନୁଷ୍ୟ କର୍ମ କରେ । ତେଣୁ କର୍ମ ଯଦି ବର୍ଣ୍ଣ ବିଭାଗର କାରଣ ହୁଏ ତେବେ ତାହା ଜନ୍ମର ପରବର୍ତ୍ତୀ । ଯେ ଯେପରି କର୍ମ କରେ ସେ ସେପରି ବର୍ଣ୍ଣରେ ପରିଣତ ହୁଏ । ପରେ 'ଗୁଣ' କଥା ବିଚାର କଲେ ଜଣାଯାଏ ଗୁଣ ଜନ୍ମଗତ ସଂସ୍କାର । କୌଣସି ଜ୍ଞାନନିଷ୍ଠ ବିଦ୍ୱାନ ଜିତେନ୍ଦ୍ରିୟ ବ୍ରାହ୍ମଣଙ୍କର ଔରସରେ ମୂର୍ଖ ଅସଦ୍ ଚରିତ୍ର ପୁତ୍ରର ଜନ୍ମ ହେବା ଦୃଷ୍ଟାନ୍ତ ଏ ସଂସାରରେ ଅନେକ । ସେହିପରି ଗଣ୍ଡମୂର୍ଖ ଅସଚ୍ଚରିତ୍ର ଲୋକ ଔରସରେ ଚରିତ୍ରବାନ ଜ୍ଞାନନିଷ୍ଠ ପୁତ୍ର ଜନ୍ମର ଦୃଷ୍ଟାନ୍ତ ଏ ସଂସାରରେ ଅଳ୍ପ ଦେଖାଯାଏ ନାହିଁ । ଏପରି ଅବସ୍ଥାରେ ଗୁଣ ଓ କର୍ମ ଅନୁସାରେ ଚାରି ବର୍ଣ୍ଣର ସୃଷ୍ଟି କଥା ଯାହା ଭଗବାନ କହିଅଛନ୍ତି ତାହା ଜନ୍ମର ପରବର୍ତ୍ତୀ କାର୍ଯ୍ୟ ।

ବୈଦିକ ଗ୍ରନ୍ଥାଦି ଆଲୋଚନା କରି ଏ ଯୁଗର ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ଅତି ପ୍ରାଚୀନ ଯୁଗରେ ବର୍ଣ୍ଣବିଭାଗ ଥିଲା ମାତ୍ର ଏପରି ଜାତି ବିଭାଗ ସମାଜରେ ନଥିଲା । ସମସ୍ତେ ଏକ ଜାତି ଥିଲେ, ବ୍ୟବସାୟଭେଦରେ ପରବର୍ତ୍ତୀ କାଳରେ ଜାତି ବିଭାଗ ସମାଜରେ ପ୍ରବର୍ତ୍ତିତ ହେଲା ଏବଂ କାଳକ୍ରମେ ଏହା ବଂଶଗତ ହେଲା । ଏ ମତ ଏ ଯୁଗର ପଣ୍ଡିତମାନଙ୍କର କପୋଳକଳ୍ପିତ ନୁହେଁ । ଗୌତମ ସଂହିତାରେ ଏ ସମ୍ବନ୍ଧରେ ଲିଖିତ ଅଛି :

*ଅଗ୍ନିହୋତ୍ର ବ୍ରତ ପରାନ୍, ସ୍ୱଧ୍ୟାୟ ନିରତାନ ଶୁଚୀନ୍*
*ଉପବାସ ରତାନ୍ ଦାନ୍ତାଂ ସ୍ତାନ୍ ଦେବା ବ୍ରାହ୍ମଣାଂ ବିଦୁଃ ।*

*ନ ଜାତି ପୂଜ୍ୟତେ ରାଜନ୍ ଗୁଣାଃ କଲ୍ୟାଣ କାରକାଃ*
*ଚଣ୍ଡାଳ ମପି ବୃଉସ୍ଥଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥*

ଅର୍ଥାତ୍ : ଯେଉଁମାନେ ଅଗ୍ନିହୋତ୍ର ବ୍ରତ ପରାୟଣ ବେଦାଧୟନ ନିରତ, ଶୁଦ୍ଧ, ଉପବାସ ରତ ଓ ଜିତେନ୍ଦ୍ରିୟ ତାହାଙ୍କୁ ଦେବତାମାନେ ବ୍ରାହ୍ମଣ କହନ୍ତି । ହେ ରାଜନ ! ଜାତି ପୂଜ୍ୟ ନୁହେଁ, ଗୁଣ ହିଁ କଲ୍ୟାଣ କର । ଚଣ୍ଡାଳ ଯଦି ନିଷ୍ପାପର ହୁଏ ତାହାକୁ ଦେବତାମାନେ ବ୍ରାହ୍ମଣ ବୋଲି କହନ୍ତି । ପୁନଶ୍ଚ :-

*ଶାନ୍ତଂ ଦାନ୍ତଂ ଜିତକ୍ରୋଧଂ ଜିତାତ୍ମାନଂ ଜିତେନ୍ଦ୍ରିୟ*
*ତମେବ ବ୍ରାହ୍ମଣଂମନ୍ୟେ ଶେଷାଃ ଶୂଦ୍ରାଇତି ସ୍ମୃତାଃ ।*

କ୍ଷମାଶୀଳ, ସଂଯତେନ୍ଦ୍ରିୟ, ଜିତକ୍ରୋଧ, ଜିତାତ୍ମା ଓ ଜିତେନ୍ଦ୍ରିୟ ଲୋକଙ୍କୁ ବ୍ରାହ୍ମଣ ବୋଲି ମନେ କରାଯାଏ, ଆଉ ସମସ୍ତେ ଶୁଦ୍ର । ସେବାଶ୍ୱବୃତ୍ତିରାଖ୍ୟାତା (ମନୁ ୪୦୬ ଶ୍ଲୋକ) ସେବା ଧର୍ମ କୁକୁର ବୃତ୍ତି ସଙ୍ଗେ ସମାନ । ତେଣୁ ସେବାକାରୀ କେବଳ ଜନ୍ମ ବଳରେ ବ୍ରାହ୍ମଣ ବୋଲାଇବ ନାହିଁ । ଏ ପ୍ରସଙ୍ଗରେ ଶ୍ରୀମଦଭଗବତ ସପ୍ତମ ସ୍କନ୍ଦ ନବମ ଅଧ୍ୟାୟରେ ପ୍ରହଲ୍ଲାଦଙ୍କର ନୃସିଂହସ୍ତୁତି ମଧ୍ୟ ପ୍ରଣିଧାନଯୋଗ୍ୟ । ତାଙ୍କ ସ୍ତୁତିରେ ସେ ଜଣାଉଅଛନ୍ତି -

ବ୍ରହ୍ମାଦି ସିଦ୍ଧ ମୁନିଗଣେ
ଅମୃତ ବଚନ ପ୍ରବାହେ

ସ୍ୱଭାବ ସାତ୍ତ୍ୱିକ ଲକ୍ଷଣେ
ନିର୍ମଳ ବିଶୁଦ୍ଧ ହୃଦୟେ ।

ନାନା ପ୍ରକାରେ ସ୍ତୁତି କରି
ମୁଁ ଛାର ଅସୁର ହୋଇଣ

ଆରାଧି ନ ପାରିଲେ ହରି
କାହୁଁ ତୋଷିବି ନାରାୟଣ

ଧନ ସତକୁଳ ଅବା ରୂପ
ବଳ ପୌରୁଷ ବୁଦ୍ଧି ଯୋଗ

ପଣ୍ଡିତ ପଣ ତେଜ ଦର୍ପ
ଓଜ ବିଭୂତି ବାରମାର୍ଗ

ଏ ଆଦି ଯେତେ ଗୁଣ ଗ୍ରାମ
କେବଳ ଭକ୍ତି ଯୋଗେ ତୋଷ

ନୁହନ୍ତି ବିଷ୍ଣୁ ତୋଷେ କ୍ଷମ
ଯେସନେ ଗଜେନ୍ଦ୍ର ବିଶ୍ୱାସ

ଦ୍ୱାଦଶ ଗୁଣେ ବିପ୍ରଯୁକ୍ତ
ସେ ବିପ୍ରଶ୍ରେଷ୍ଠ ନ ବୋଲାଇ

ସେ ଯେବେ ନୋହେ ବିଷ୍ଣୁଭକ୍ତ
ସଂସାରୁ ତରିବ ସେ କାହିଁ

ଯେହୁ ଦ୍ୱାଦଶ ଗୁଣ ଧରେ
ସ୍ୱଭାବେ ସତ୍ୟ ଶମ ଦମ

ସେ ବିପ୍ର ସଂସାର ବେଭାରେ
ଅହିଂସା ଦର୍ପ, କ୍ଷମା ଧର୍ମ

ଆର୍ଜବ ଦାନ ବ୍ରତ ଧୃତି
ଶଉଚ ଶୁଚ ଆଦି କୃତି
ଦ୍ୱାଦଶ ବ୍ରାହ୍ମଣ ଲକ୍ଷଣ
ବେଦେ ବର୍ଣ୍ଣିତ ଏତେ ଗୁଣ

ଏମନ୍ତ ବିପ୍ର ହୋଇ ଯେବେ
ଭକ୍ତି ନବରେ କୃଷ୍ଣ ଭାବେ
ଚଣ୍ଡାଳ ଜନ୍ମ ହୋଇ ଯେବେ
ମନ ଦର୍ପଇ କୃଷ୍ଣ ଭାବେ

ଆତ୍ମା ପବିତ୍ର ବେରେ କରେ
ଚଣ୍ଡାଳ କୁଳକୁ ଉଦ୍ଧାରେ
ବ୍ରାହ୍ମଣ ସର୍ବମାନ୍ୟ ହୋଇ
ଆତ୍ମା ଉଦ୍ଧରି ନପାରଇ

ସେ ହରି ନିତ୍ୟ ଶୁଦ୍ଧ ଜ୍ଞାନ
ଆତ୍ମା ପ୍ରକାଶେ ନିରଞ୍ଜନ
ସେ କାହିଁ ଅଜ୍ଞାନ ସଂକଟେ
ଆଦର ନାନା ପୂଜା ରୂପେ

ଯେଣୁ ଦୟାଳୁ ସେ ବୋଲାଇ
ଏଣୁ ଭରସା ପ୍ରାଣୀ ପାଇ

ଏହାର ସାରଅର୍ଥ ଯେଉଁ ବ୍ରାହ୍ମଣ ଉଚ୍ଚ କୁଳରେ ଜନ୍ମ, ବର୍ଣ୍ଣିତ ବାର ସଦଗୁଣଯୁକ୍ତ କିନ୍ତୁ ଭଗବାନଙ୍କର ଚରଣ କମଳ ପ୍ରତି ବିମୁଖ, ତାଠାରୁ ଯେଉଁ ଚଣ୍ଡାଳ ନିଜ ମନ ବଚନ କର୍ମ ଧନ ଓ ପ୍ରାଣ ଶ୍ରୀହରିଙ୍କଠାରେ ସମର୍ପଣ କରିଦେଇଅଛି ସେ ଶ୍ରେଷ୍ଠ ଅଟେ । ଏହି ଚଣ୍ଡାଳ ନିଜ କୁଳକୁ ପବିତ୍ର କରେ ମାତ୍ର ଉଚ୍ଚକୁଳ ସମ୍ପନ୍ନ ସମ୍ମାନାସ୍ପଦ ବ୍ରାହ୍ମଣ ଏହା କରିବାକୁ ଅକ୍ଷମ ହୋଇଥାଏ । (ଶ୍ରୀମଦ୍ ଭଗବଦ୍ ଗୀତା ପଣ୍ଡିତ କୁଳମଣି ଦାଶ ସଂଶୋଧିତ ସଂସ୍କରଣ ୧୯୮୬ ପୃ ୧୩୨-୧୩୪) ।

ଶ୍ରୀମଦ ଭାଗବତ ଏକାଦଶ ସ୍କନ୍ଧ ଅଷ୍ଟାଦଶ ଅଧ୍ୟାୟରେ ଚାତୁର୍ବର୍ଣ୍ଣ ଧର୍ମ ଲକ୍ଷଣ ଓ ଚାରି ଆଶ୍ରମର ବିଧିବ୍ୟବସ୍ଥା ସଂପର୍କରେ ଶ୍ରୀକୃଷ୍ଣଙ୍କ ଉପଦେଶ ବର୍ଣ୍ଣନା କରାଯାଇଅଛି । ଏ ପ୍ରସଙ୍ଗରେ କୁହାଯାଇଛି :-

ମୋ ପାଦ ଉରୁ ଭୁଜାନନେ
ଜନ୍ମ ହୋଇଲେ ଚାରିବର୍ଣ୍ଣେ
ମୋ ଭୁଜୁଁ ଜନ୍ମ କ୍ଷତ୍ରି ଜାତି
ଉରୁରୁ ବୈଶ୍ୟ ଉତ୍ପତି ।

ମୁଖୁଁ ବ୍ରାହ୍ମଣ ମୋର ଜାତ
ଶୁଦ୍ର ମୋ ଚରଣୁଁ ସମ୍ଭୂତ
ଏଣୁ ମୁଁ ପୁରୁଷ ପୁରାଣ
ଈଶ୍ୱର ବ୍ରହ୍ମାଣ୍ଡ କାରଣ ।

ବିରାଟ ପୁରୁଷ ମୋ ଗତି
ମୋ ଠୁଁ ସୃଷ୍ଟି ଉତ୍ପତି
ମୋର ଜଘନୁ ଗୃହବାସୀ
ହୃଦୟ ପଦ୍ମୁ ବ୍ରହ୍ମଚାରୀ ।

ମୋ ବକ୍ଷସ୍ଥଳୁ ବନବାସୀ
ମସ୍ତକୁ ଜନ୍ମିଲେ ସନ୍ୟାସୀ
ଏ ସର୍ବବର୍ଣ୍ଣ ସର୍ବାଶ୍ରମ
ସମ୍ଭବ ଉଚ୍ଚନୀଚସ୍ଥାନ ।

ପ୍ରକୃତି ଜନ୍ମ ଅନୁସାରେ
ଉତ୍ତମ ସଙ୍ଗେ ସଙ୍ଗ ଯାର
ହୀନ ସଙ୍ଗତେ ହୀନ ଗତି
ଉଦ୍ଧବ ଏକମନେ ଶୁଣ
ଜପ, ଶଉଚ, ଶମ, ଦମ
ସତ୍ୟ, ସନ୍ତୋଷ, କ୍ଷମା, ଦୟା
ଏ ସର୍ବ ବ୍ରାହ୍ମଣ ଲକ୍ଷଣ
ତେଜ, ଶଉଚ, ବଳ ଶୌର୍ଯ୍ୟ
ବିପ୍ର, ଭକତି, ଧୃତି ମନ୍ତ
ଦାନ ଅର୍ଚ୍ଚନେ ତତପର
କ୍ଷତ୍ରିୟ, ଲକ୍ଷଣ ଏ ଜାଣ
ବିପ୍ର ପୋଷଣ, ଦାନ ଯୁକ୍ତ
କ୍ରୟ, ବିକ୍ରୟ ସାଧୁମତେ
ବୈଶ୍ୟର କୁଳ ଧର୍ମ ଏହି
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟଗଣେ
ସକଳ ଜୀବେ ଥିବ ଦୟା
ଶୁଦ୍ର ଜନର ଏ ବେଭାର
ଅସତ୍ୟ ବାକ୍ୟ, ନିଷ୍ଠାହୀନ
ବିରୋଧ ବାଦ କୁବଚନ
ପରହିଂସନ ପରବାଦ
ନୀଚ ଜନଙ୍କ ଏ ସ୍ୱଭାବଃ
ନଥିବ ହିଂସା ଚୋରୀ ଦମ୍ଭ
ସତ୍ୟ ବଚନ ପ୍ରିୟବାଣୀ
ଏ ସର୍ବ ଲୋକେ ସାଧାରଣ
ବ୍ରାହ୍ମଣ ଆଦି ଯଥାକ୍ରମେ

ସ୍ୱଭାବ ଆଚାର ବେଭାରେ
ସେ କରେ ଉତ୍ତମ ବେଭାର ।
ହସି କହନ୍ତି ଯଦୁପତି
ବ୍ରାହ୍ମଣ ଆଦି ଯେ ଲକ୍ଷଣ ।
ମୋର ଭକତି ଅନୁପମ
ଆର୍ଜବ ହୃଦୟ, ନିର୍ମାୟା ।
କ୍ଷତ୍ରିୟ ଧର୍ମ ଏବେ ଶୁଣ
ତିତିକ୍ଷା, ଉଦ୍ୟମ ଔଦାର୍ଯ୍ୟ ।
ବିକ୍ରମ ଅଇଶ୍ୱର୍ଯ୍ୟଯୁକ୍ତ
ରଣେ ହୋଇବ ଆଗୁସାର ।
ଅପରେ ବୈଶ୍ୟ ଧର୍ମ ଶୁଣ
ଦମ୍ଭ ବର୍ଜ୍ଜିତ, କୃଷିରତ ।
ଧନ ସଞ୍ଚୟ, ଧର୍ମଯୁକ୍ତେ
ଏବେ ହୋ ଶୁଦ୍ର ଧର୍ମ କହି ।
ସେବା କରିବ ଅନୁକ୍ଷଣେ
କେବେ ହେଁ ନ କରିବ ମାୟା ।
ଶୁଣ ହୀନଜନ ଆଚାର
ନାସ୍ତିକ, କ୍ରୋଧ ହତଜ୍ଞାନ ।
କଦଳ ଆଚାର ଲଙ୍ଘନ
ପର ରମଣୀ ଧନେ ସଧ ।
ସାମାନ୍ୟ ଶୁଣ ହେ ଉଦ୍ଧବ
ଆବର କାମ କ୍ରୋଧ ଲୋଭ ।
ଭୂତ୍ୟ ସୁହୃଦ ଯେତେ ପ୍ରାଣୀ
ସ୍ୱଧର୍ମ ସ୍ୱଭାବ ପ୍ରମାଣ ।
ଯେ ଥିବେ ଯେମନ୍ତ ଆଶ୍ରମେ ।

ଏ ସଂକ୍ରାନ୍ତରେ ଲୋକମାନ୍ୟ ତିଳକଙ୍କର ଗୀତା ରହସ୍ୟ ବା କର୍ମ ଯୋଗଶାସ୍ତ୍ର ଗ୍ରନ୍ଥରେ ଲିଖିତ ମତ ପ୍ରଣିଧାନଯୋଗ୍ୟ । ଲୋକମାନ୍ୟ ଲେଖିଛନ୍ତି : ସମାଜର ସମସ୍ତ ବ୍ୟବହାର ଯେପରି

ସୁଚାରୁ ରୂପେ ପରିଚାଳିତ ହେବ, କୌଣସି ଏକ ବିଶିଷ୍ଟ ବ୍ୟକ୍ତି ବା ମଣ୍ଡଳୀ ଉପରେ ସମସ୍ତ ଭାରର ଚାପ ନ ପଡିବ ଏବଂ ସମାଜରେ ସବୁ ପକ୍ଷର ଯେପରି ସମ ଭାବରେ ଭଲ ରୂପେ ସଂରକ୍ଷଣ ଓ ପୋଷଣ ହେବ ଏହି ଉଦ୍ଦେଶ୍ୟରେ ଶ୍ରମ ବିଭାଗ ରୂପ ଚର୍ତୁବର୍ଣ୍ଣ ବ୍ୟବସ୍ଥା ପୁରାତନ ଋଷିମାନେ ସଂସ୍ଥାପନ କରିଥିଲେ । ଅବଶ୍ୟ ପରବର୍ତ୍ତୀ କାଳରେ ଚର୍ତୁବର୍ଣ୍ଣର ଲୋକେ କେବଳ ଜାତି ମାତ୍ର ଉପଜୀବୀ ଅର୍ଥାତ୍ ପ୍ରକୃତ ସ୍ୱଧର୍ମ ବିସ୍ମୃତ ହୋଇ କେବଳ ନାମକୁ ମାତ୍ର ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୁଦ୍ର ହୋଇ ପଡିଲେ ଏହା ଏକ ପୃଥକ୍ କଥା । ମାତ୍ର ଏହା ନିସନ୍ଦେହରେ କୁହାଯାଇପାରେ ଯେ ମୂଳରୁ ଏହି ବ୍ୟବସ୍ଥା ସମାଜ ଧାରଣ ନିମିତ୍ତ କରାଯାଇଥିଲା ଏବଂ ଚାରିବର୍ଣ୍ଣ ମଧ୍ୟରେ ଯଦି କେହି ନିଜର ଧର୍ମ ଅର୍ଥାତ୍ କର୍ତ୍ତବ୍ୟ ପରିତ୍ୟାଗ କରେ ବା ଯଦି କୌଣସି ବର୍ଣ୍ଣ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଏ ଓ ତାହାର ସ୍ଥାନ ଯଦି ଅନ୍ୟଲୋକ ଆସି ପୂର୍ଣ୍ଣ ନ କରେ, ତାହାହେଲେ ସମସ୍ତ ସମାଜ ସେହି ଅନୁପାତରେ ପଙ୍ଗୁ ହୋଇ ଧୀରେ ଧୀରେ ବିନାଶ ପ୍ରାପ୍ତ ହୁଏ କିମ୍ବା ଏହା ନିକୃଷ୍ଟ ଅବସ୍ଥାରେ ଆସି ପହଞ୍ଚେ ।

ଏ କଥା ସତ୍ୟ ଯେ ପାଶ୍ଚାତ୍ୟ ଖଣ୍ଡରେ ଚର୍ତୁବର୍ଣ୍ଣ ବ୍ୟବସ୍ଥା ବ୍ୟତୀତ ଅନ୍ୟ କେତେକ ସମାଜର ଅଭ୍ୟୁଦୟ ହୋଇଛି ତଥାପି ଏହା ମନେ ରଖିବାକୁ ହେବ ଯେ ସେ ଦେଶରେ ଚର୍ତୁବର୍ଣ୍ଣ ବ୍ୟବସ୍ଥା ନଥିଲେ ମଧ୍ୟ ଚାରିବର୍ଣ୍ଣର ସମସ୍ତ ଧର୍ମ, ଜାତି, ରୂପେ ନ ହେଲେ ମଧ୍ୟ ଗୁଣ ବିଭାଗ ରୂପେ ଜାଗ୍ରତ ହୋଇ ରହିଅଛି । ସାରକଥା ଯେତେବେଳେ ଆମ୍ଭେମାନେ ବ୍ୟବହାରିକ ଦୃଷ୍ଟିରେ ଧର୍ମଶବ୍ଦ ବ୍ୟବହାର କରୁ ସେତେବେଳେ ସର୍ବ ସମାଜର ଧାରଣ ଓ ପୋଷଣ କିରୂପେ ହୋଇପାରେ ତାହା ଆମ୍ଭେମାନେ ଦେଖିଥାଉ । ମନୁ କହିଛନ୍ତି ଅସୁଖୋଦକ ଅର୍ଥାତ୍ ଯାହାର ପରିଣାମରେ ଦୁଃଖ ହୁଏ ସେ ପ୍ରକାର ଧର୍ମ ସର୍ବଦା ପରିତ୍ୟାଗ କରିବା ଉଚିତ (୩ୟ ପ୍ରକରଣ କର୍ମଯୋଗ ଶାସ୍ତ୍ର) । ସାରାଂଶ ହେଲା : ବର୍ଣ୍ଣ ବିଭାଗର କାରଣ ଜନ୍ମପରେ  କରିବା କର୍ମ । ଗୁଣ ଜନ୍ମଗତ ସଂସ୍କାର । ଏତିକି ଜଣେ ହିନ୍ଦୁ ଉପଲବ୍ଧି କଲେ ସେ ସମାଜ, ରାଜନୀତି ଲୋକାଚାରର ସଂଘର୍ଷରୁ ଦୂରେଇ ଯିବ । ଏ ସଂକ୍ରାନ୍ତରେ ପୁରାଣଯୁଗ ଦେଖିବା ।

ଜାତି ଜନ୍ମଗତ ନା ବୃତ୍ତିଗତ : ପଞ୍ଚମ ବେଦ କୁହାଯାଉଥିବା ମହାଭାରତରେ ଜନ୍ମଦ୍ୱାରା ଜାତି ନିର୍ଣ୍ଣୟ ଉପରେ ଅନେକ ଉଦାହରଣଥିଲେ ମଧ୍ୟ କର୍ମଦ୍ୱାରା ବ୍ରାହ୍ମଣାଦି ବର୍ଣ୍ଣ ଓ ଜାତି ସ୍ଥିର କରାହୁଏ, ଏ ବିଷୟରେ ଯଥୋଚିତ ଓ ଯୁକ୍ତିସଙ୍ଗତ ପ୍ରମାଣୀଭାସର ଅଭାବ ନାହିଁ । ଯେ ବ୍ରାହ୍ମଣର ନିର୍ଦ୍ଦିଷ୍ଟ କର୍ମ (ଯଜନ, ଯାଜନ ଅଧ୍ୟାପନା, ତପସ୍ୟା ଇତ୍ୟାଦି) କରେତାକୁ ବ୍ରାହ୍ମଣ, କ୍ଷତ୍ରିୟ କର୍ମ (ଯୁଦ୍ଧ, ରାଜ୍ୟ ଶାସନ ପ୍ରଭୃତି) କରେ ତାକୁ କ୍ଷତ୍ରିୟ କୁହାଯାଏ । ଏହି ପରିଭାବରେ ବୈଶ୍ୟ ଓ ଶୁଦ୍ର ଜାତି  ନିର୍ଣ୍ଣୟର ନିୟମ ଅଛି । ବନ ପର୍ବରେ ସର୍ପରୂପୀ ନହୁଷଙ୍କର ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର ବ୍ରାହ୍ମଣର ଲକ୍ଷଣ ବର୍ଣ୍ଣନା କରିଅଛନ୍ତି । ସତ୍ୟ, ଅନିଷ୍ଠୁରତା, ଦାନ, କ୍ଷମା, ତପସ୍ୟା ଓ ଦୟା ଯେଉଁ

ବ୍ୟକ୍ତିଠାରେ ପ୍ରତିଷ୍ଠିତ ସେହି ହିଁ ବ୍ରାହ୍ମଣ । ଯୁଧିଷ୍ଠିରଙ୍କ ଉତ୍ତର ଶୁଣି ନହୁଷ ପୁଣି ପ୍ରଶ୍ନ କରିଅଛନ୍ତି ଜନ୍ମରୁ ଶୂଦ୍ରଠାରେ ଯଦି ସତ୍ୟ ଦାନ କ୍ଷମା ପ୍ରଭୃତି ଗୁଣ ଦେଖାଯାଏ ତେବେ ସେ କଣ ହେବ ? ଉତ୍ତରରେ ଯୁଧିଷ୍ଠିର କହିଅଛନ୍ତି ଶୂଦ୍ରର ଜାତିଗତ ଗୁଣ ପରିଚର୍ଯ୍ୟା ପ୍ରଭୃତି ଯଦି ବ୍ରାହ୍ମଣଠାରେ ଦେଖାଯାଏ ତାହାହେଲେ ତାକୁ ଶୂଦ୍ର ବୋଲି ସ୍ୱୀକାର କରାଯିବ । ବ୍ରାହ୍ମଣର ଗୁଣ ଶମ-ଦମ ପ୍ରଭୃତି ଯଦି ଶୂଦ୍ରଠାରେ ଦେଖାଯାଏ ତେବେ ସେ ଶୂଦ୍ର ମଧ୍ୟ ବ୍ରାହ୍ମଣରେ ଗଣାଯିବ । ଶୂଦ୍ର ମା'ର ଗର୍ଭରୁ ଜନ୍ମଗ୍ରହଣ କରି ଯେ ସତକର୍ମର ଅନୁଷ୍ଠାନ କରେ ସେ କ୍ରମଶଃ ବୈଶ୍ୟତ୍ୱ ଓ ବ୍ରାହ୍ମଣତ୍ୱ ଲାଭ କରେ । ବନ ପର୍ବର ଯକ୍ଷ-ଯୁଧିଷ୍ଠିର ସମ୍ବାଦରେ ଦେଖାଯାଏ କିପରି ଭାବରେ ବ୍ରାହ୍ମଣତ୍ୱ ଲାଭ କରାଯାଏ । ଏହି ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର କହିଛନ୍ତି କୁଳ, ବେଦ ଅଧୟନ ପ୍ରଭୃତି କିଛି ହେଲେ ବ୍ରାହ୍ମଣତ୍ୱର କାରଣ ନୁହେଁ । ଏକମାତ୍ର ବୃତ୍ତ (ଚରିତ୍ର) ହିଁ ଦ୍ୱିଜତ୍ୱର ହେତୁ । 'କାରଣାନି ଦ୍ୱିଜେତ୍ୱସ୍ୟ ବୃତ୍ତମେବ ତୁ କାରଣମ । ଅନୁଶାସନ ପର୍ବରେ ଉମା ମହେଶ୍ୱର ସମ୍ବାଦରେ ମହେଶ୍ୱରଙ୍କ ମୁଖରେ କୁହାଯାଇଛି ଯେ ସଚ୍ଚରିତ୍ର ଦୟାଳୁ, ଅତିଥି ପରାୟଣ ନିରହଂକାର ଗୃହସ୍ଥ, ନୀଚ ଜାତିରେ ଜନ୍ମ ଲଭିଥିଲେ ମଧ୍ୟ ଦ୍ୱିଜତ୍ୱ ଲାଭ କରେ । ସେମିତି ଯେଉଁ ବ୍ରାହ୍ମଣ ଅସାଧୁଚରିତ୍ର, ସର୍ବଭୁକ ନିନ୍ଦିତକର୍ମା ସେ ବ୍ରାହ୍ମଣ ନ ହୋଇ ଶୂଦ୍ରରେ ଗଣାଯାଏ । ବର୍ଣ୍ଣ ମଧ୍ୟରେ ପ୍ରଥମେ କୌଣସି ଭେଦ ନଥିଲା । ବ୍ରହ୍ମାଙ୍କର ସୃଷ୍ଟ ହେତୁ ସମସ୍ତ ମନୁଷ୍ୟ ବ୍ରାହ୍ମଣ ଥିଲେ ବା ସେମାନଙ୍କୁ ବ୍ରାହ୍ମଣ ବୋଲାଯାଉଥିଲା । ତାପରେ ଯେଉଁମାନେ କାମଭୋଗ ପ୍ରିୟ, କ୍ରୋଧୀ, ସାହସୀ ରଜୋଗୁଣ ପ୍ରଧାନ ହେଲେ ସେମାନଙ୍କୁ କ୍ଷତ୍ରିୟ କୁହାଗଲା । ଯେଉଁମାନେ ରଜ ଓ ତମ ଉଭୟଗୁଣ ଯୁକ୍ତ ଥାଇ ଗୋପାଳନ ଓ କୃଷିଦ୍ୱାରା ଜୀବିକାଅର୍ଜନ କରି ବସିଲେ ସେମାନେ ବୈଶ୍ୟ ବୋଲାଇଲେ । ଯେଉଁମାନେ ଲୁବ୍ଧ, ମିଥ୍ୟାପ୍ରିୟ, ସର୍ବକର୍ମ ଉପଜୀବୀ ଶୌଚାଶୌଚ ବିଚାରହୀନ ହେଲେ ସେମାନଙ୍କୁ ଶୂଦ୍ର କୁହାଗଲା । ଏହିପରି କର୍ମଦ୍ୱାରା ବ୍ରାହ୍ମଣମାନେ ବିଭିନ୍ନ ବର୍ଣ୍ଣତ୍ୱ ଲାଭ କଲେ ଏହା ଶାନ୍ତି ପର୍ବରେ ବର୍ଣ୍ଣିତ । ସେହି ଶାନ୍ତି ପର୍ବରେ ଭୃଗୁ ଭରଦ୍ୱାଜ ସମ୍ବାଦରେ କୁହାଯାଇଅଛି ଜାତକର୍ମ ଦ୍ୱାରା ସଂସ୍କୃତ, ବେଦାଧୟନଶୀଳ, ସନ୍ଧ୍ୟା ସ୍ନାନ ଜପ ପ୍ରଭୃତି ଷଟକର୍ମରେ ନିରତ ବ୍ୟକ୍ତି ବ୍ରାହ୍ମଣ, ଯୁଦ୍ଧ ବିଗ୍ରହତତ୍ପର ପ୍ରଜାପାଳନରେ ରତ ଓ ବେଦାଧୟନ ସଂପନ୍ନ ବ୍ୟକ୍ତି କ୍ଷତ୍ରିୟ, ଯେଉଁ ବ୍ୟକ୍ତି ବାଣିଜ୍ୟ, କୃଷି, ପଶୁପାଳନରେ ରତ, ବେଦାଧନରତ ସେ ବୈଶ୍ୟ । ସର୍ବଭକ୍ଷ୍ୟ, ଅନାଚାରୀ ଅଶୁଚି ବ୍ୟକ୍ତି ଶୂଦ୍ର । ଉଲ୍ଲିଖିତ କର୍ମ ହିଁ ବର୍ଣ୍ଣ ବିଭାଗର କାରଣ । ସବୁ ଅବସ୍ଥାରେ ଶୌଚ ଓ ସଦାଚାର ଯେ ରକ୍ଷା କରନ୍ତି, ସର୍ବ ଭୂତରେ ଦୟା ରଖିଥାଆନ୍ତି ସେମାନେ ହେଲେ ଦ୍ୱିଜ । କର୍ମ ଦ୍ୱାରା ବର୍ଣ୍ଣ ସ୍ଥିର ହୁଏ । ଏ ବିଷୟ ବର୍ଣ୍ଣନାକରି ଶେଷରେ ମହେଶ୍ୱର କହିଅଛନ୍ତି ଉମା, ଶୂଦ୍ରକୁଳରେ ଜନ୍ମଲାଭ କରି କିପରି ବ୍ରାହ୍ମଣତ୍ୱ ଲାଭ କରାଯାଏ ଓ ଏ ଜନ୍ମିତ ବ୍ରାହ୍ମଣ ଧର୍ମଚ୍ୟୁତ ହୋଇ କିପରି ଶୂଦ୍ର ହୁଏ ଏ ଗୂଢ଼ ତତ୍ତ୍ୱ ତୁମ ଆଗରେ ମୁଁ ପ୍ରକାଶ କଲି । ସେହିପରି ଆଦି ପର୍ବରେ କୁରୁପାଣ୍ଡବ ମାନଙ୍କର ଶସ୍ତ୍ରବିଦ୍ୟା ପରୀକ୍ଷା ସମୟରେ କର୍ଣ୍ଣ ସଭାସ୍ଥଳରେ ଉପସ୍ଥିତ ହେବାରୁ ଭୀମ ତାହାକୁ ସୂତପୁତ୍ର କହି ଉପହାସ କରିଅଛନ୍ତି । ପ୍ରତ୍ୟୁତ୍ତରରେ

ଦୁର୍ଯ୍ୟୋଧନ ଶୁଣାଇ ଅଛନ୍ତି - ଜଳରୁ ଅଗ୍ନିର ଜନ୍ମ, ଦଧିଚିଙ୍କର ଅସ୍ଥିରୁ ବଜ୍ରର ଉତ୍ପତ୍ତି । ଭଗବାନ ଗୁହ ଅଗ୍ନି, କୃତ୍ତିକା, ରୁଦ୍ର ଓ ଗଙ୍ଗା ଏଇ ଚାରିଜଣଙ୍କଠାରୁ ଉତ୍ପନ୍ନ । ବିଶ୍ୱାମିତ୍ର ପ୍ରଭୃତି କ୍ଷତ୍ରିୟମାନେ ବ୍ରାହ୍ମଣତ୍ୱ ଲାଭ କରିଅଛନ୍ତି । ଆଚାର୍ଯ୍ୟ ଦ୍ରୋଣ କଳସରୁ ଉତ୍ପନ୍ନ । ଗୌତମ ଶରସ୍ତମ୍ଭରୁ ଜାତ । ସେହି ହେତୁରୁ ମନୁଷ୍ୟକୁ ତାହାର କର୍ମଦ୍ୱାରା ବିଚାର କରିବାକୁ ହେବ । ଜାତି ଦ୍ୱାରା ନୁହେଁ । ଆଦି ପୂର୍ବରୁ ଜଣାଯାଏ କ୍ଷତ୍ରିୟକୁଳ ଜାତ ବିଶ୍ୱାମିତ୍ର କଠୋର ତପସ୍ୟା ବଳରେ ବ୍ରାହ୍ମଣତ୍ୱ ଲାଭ କରିପାରିଥିଲେ । ମହର୍ଷି ଭୃଗୁଙ୍କର ଅନୁଗ୍ରହ ଫଳରେ କ୍ଷତ୍ରିୟ ବିତହବ୍ୟ ବ୍ରହ୍ମର୍ଷିତ୍ୱ ଲାଭ କରିଥିଲେ । ଏତଦ୍‌ବ୍ୟତୀତ ଦେବାପି ଓ ସିନ୍ଧୁଦ୍ୱୀପ ନାମଧାରୀ ଦୁଇ କ୍ଷତ୍ରିୟ ସରସ୍ୱତୀ ନଦୀର ଉତ୍ତରତୀରରେ ମହର୍ଷି ଆଷ୍ଟିଶେଣଙ୍କର ଆଶ୍ରମରେ ବ୍ରାହ୍ମଣତ୍ୱ ପାଇଥିବା ଶଲ୍ୟ ପର୍ବରେ କୁହାଯାଇଅଛି । ଏହି ସବୁ ଉଦାହରଣରୁ ଜଣାଯିବ ଯେ ମନୁଷ୍ୟ ଯେକୌଣସି ମାତାପିତା ଘରେ ଜନ୍ମ ଗ୍ରହଣ କରୁନା କାହିଁକି ନିଜ ଗୁଣ ଓ କର୍ମ ଅନୁସାରେ ତାହାର ବର୍ଣ୍ଣ ବା ଜାତି ନିର୍ଣ୍ଣୟ କରାଯାଇଥାଏ । ଏହି ଶାସ୍ତ୍ରଗତ ବଚନ ଓ ଉଦାହରଣ ଜନ୍ମଗତ ଜାତି ନିର୍ଣ୍ଣୟର ବିରୁଦ୍ଧରେ ପ୍ରଦର୍ଶିତ ହୋଇଅଛି । ଚର୍ତୁର୍ବର୍ଣ୍ଣ୍ୟ ପ୍ରଥା ଦୁଇଭାଗରେ ସେ ସମୟରେ ବିଦ୍ୟମାନ ଥିଲା ପ୍ରଥମତଃ ଔପାଧିକ ଯାହା ଜନ୍ମଗତ, ଦ୍ୱିତୀୟତଃ ସ୍ୱଭାବିକ ଅଥବା ଗୁଣଗତ । ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, ପରଶୁରାମ ଏମାନେ ଔପାଧିକ ବ୍ରାହ୍ମଣଥାଇ ସ୍ୱଭାବିକ କ୍ଷତ୍ରିୟ ଥିଲେ । କେବଳ ବ୍ରାହ୍ମଣ ଔରସରୁ ଏମାନେ ଜନ୍ମ ଗ୍ରହଣ କରିଥିଲେ ମାତ୍ର ବ୍ରାହ୍ମଣୋଚିତ ବୃତ୍ତି ସେମାନେ ଅବଲମ୍ବନ କରିନଥିଲେ । କ୍ଷତ୍ରିୟବୃତ୍ତି ଯୁଦ୍ଧ ବିଗ୍ରହାଦି ଅନୁଶୀଳନ କରି ସେମାନେ ଜୀବନ ଅତିବାହିତ କରିଥିଲେ । ସେମିତି ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତି ଔପାଧିକ କ୍ଷତ୍ରିୟ ଥିଲେ ମାତ୍ର ଗୁଣଗତଭାବେ ସେମାନଙ୍କଠାରେ ବୈଶ୍ୟତ୍ୱ ଓ ଶୁଦ୍ରତ୍ୱ ମିଳିତ ହୋଇଥିଲା ଏକାଧିକ ବାର ଯୁଦ୍ଧକ୍ଷେତ୍ରରୁ ପଳାୟନ ସେମାନଙ୍କର କ୍ଷତ୍ରିୟୋଚିତ ଆଚରଣର ବିରୁଦ୍ଧ ଥିଲା । ବିଦୁର, ଧର୍ମବ୍ୟାଧ, ତୁଳାଧାର ପ୍ରଭୃତି ଔପାଧିକ ଶୁଦ୍ର ବା ବୈଶ୍ୟ ଥିଲେ ମଧ୍ୟ ଗୁଣ ଅନୁସାରେ ସେମାନେ ଶ୍ରେଷ୍ଠ ବ୍ରାହ୍ମଣ ସଂପଦର ଅଧିକାରୀ ଥିଲେ । ବିଦୁର ଶୁଦ୍ର ଜନନୀର ସନ୍ତାନ । ନିଜେ ସବୁଠାରେ ଆପଣାକୁ ଶୁଦ୍ରବୋଲି ପରିଚୟ ଦେଉଥିଲେ । ଅଥଚ ମହାଭାରତର ଚରିତ୍ରମାନଙ୍କ ମଧ୍ୟରେ ତାଙ୍କ ପରି ଦୃଢ଼ ନ୍ୟାୟଚେତା ଆଉ କେହି ନଥିଲେ । ସର୍ବତ୍ର ସେ ସମ୍ମାନର ଅଧିକାରୀ ଥିଲେ । ନିଜର ଆଦର୍ଶ ଆଚରଣ ଯୋଗୁଁ ମହାଭାରତରେ ବିଦୁରଙ୍କର ବିଶେଷଣ ମହାତ୍ମା । ଭଗବାନ ଶ୍ରୀକୃଷ୍ଣଙ୍କର ସେ ଅତ୍ୟନ୍ତ ଶ୍ରଦ୍ଧାପାତ୍ର ଥିବାରୁ ଦୁର୍ଯ୍ୟୋଧନଙ୍କର ଆତିଥ୍ୟ ପ୍ରତ୍ୟାଖାନ କରି ସେ ବିଦୁରଙ୍କର ଘରେ ଶାକଅନ୍ନ ଭୋଜନ କଲେ । ଲୋକ ସମାଜରେ ଏହି ପ୍ରକାରରେ ସେ ବିଦୁରଙ୍କର ମାହାତ୍ମ୍ୟ ବୃଦ୍ଧି କରିଥିଲେ । ଯୁଧିଷ୍ଠିର ଦୁର୍ଯ୍ୟୋଧନ ପ୍ରଭୃତି କ୍ଷତ୍ରିୟମାନେ ପାଦଛୁଇଁ ତାଙ୍କୁ ପ୍ରଣାମ କରୁଥିଲେ । ଓଡ଼ିଶାରେ ବହୁ ଶତାବ୍ଦୀ ପରେ ଓଡ଼ିଆ ମହାଭାରତକାର ସାରଳା ଦାସ, ଶାସକ ବୈଷ୍ଣବ କୁଳତିଳକରାୟ ରାମାନନ୍ଦ ମଧ୍ୟ ନିଜକୁ ଅଧମ ଶୁଦ୍ର ବୋଲି ବିନୟ ସହିତ ବର୍ଣ୍ଣନା କରିଅଛନ୍ତି । ଧର୍ମବ୍ୟାଧ ନୀଚ କୁଳରେ ଜନ୍ମ । ତୁଳଧାର ବୈଶ୍ୟ ଖୁଚୁରା ବେପାରୀ । ବ୍ରାହ୍ମଣ

କୌଶିକ ମିଥିଳା ବଜାରରେ ଧର୍ମ ବ୍ୟାଧକୁ ମାଂସ ବିକ୍ରି କରୁଥିବାରୁ ଦେଖି ଏ ପ୍ରକାର ଘୋର କର୍ମ ପଶୁବଧ ଓ ମାଂସବିକ୍ରୟ ତାଙ୍କ ପକ୍ଷରେ ବିସଦୃଶ ବୋଲି କହିବାରୁ ବ୍ୟାଧ ନିଜ ଜନ୍ମୋଚିତ କର୍ମ (ବୃତ୍ତି) ଯାହା ସହଜ କର୍ମ ନାମରେ ଅଭିହିତ ତାହା ପୁରୁଷାନୁକ୍ରମେ ପ୍ରାପ୍ତ ଯୋଗ୍ୟ ନିଜର ଧର୍ମବୋଲି କହିଥିଲେ । ନିଜର ଆଚରଣ ମାତ୍ର ବ୍ରାହ୍ମଣୋଚିତ ଥିଲା । ସେ ସଶ୍ରଦ୍ଧଭାବରେ ଗୁରୁଜନଙ୍କର ସେବା କରୁଥିଲେ । ଦେବତା, ଅତିଥି, ପୋଷ୍ୟବର୍ଗ, ଭୃତ୍ୟ ଏମାନଙ୍କର ସେବା ପରେ ଅବଶିଷ୍ଟ ଖାଦ୍ୟ ସେ ନିଜେ ବ୍ୟବହାର କରୁଥିଲେ । ପରନିନ୍ଦା, ପରଚର୍ଚ୍ଚା, ଅସୂୟା, ମିଥ୍ୟା ପ୍ରଭୃତି ଦୁର୍ଗୁଣଠାରୁ ସେ ମୁକ୍ତଥିଲେ । ଫଳରେ ସମଗ୍ର ମାନବ ଜାତିର ଅବଶ୍ୟ ଅବଲମ୍ବନୀୟ ସତ୍ୟ ଦୟା ପ୍ରଭୃତି ଗୁଣର ଅନୁଶୀଳନ କରି ନିଜର ଜନ୍ମଗତ ବୃତ୍ତି ଦ୍ୱାରା ଜୀବନଯାପନ କରୁଥିବା ଜଣେ ବ୍ୟାଧ, ବ୍ରାହ୍ମଣ ସନ୍ତାନର ଉପଦେଷ୍ଟା ଗୁରୁଭାବରେ ଗୃହୀତ ହୋଇଥିଲେ । ତୁଳାଧାରଙ୍କର ଆଚରଣ ମଧ ଆଦର୍ଶ ସ୍ଥାନୀୟ ଥିଲା । ସେ ଜଣେ ଥିଲେ ବାରାଣସୀ ନିବାସୀ ଧର୍ମପରାୟଣ ବ୍ରହ୍ମଜ୍ଞାନ ସଂପନ୍ନ ବଣିକ । ମହର୍ଷି ଜାଜଳି ବହୁ ତପସ୍ୟା ପରେ ସଫଳତା ନପାଇ ଶେଷରେ ବ୍ରହ୍ମଜ୍ଞାନ ପାଇବାକୁ ତୁଳାଧାରଙ୍କ ପାଖକୁ ଆସିଲେ । ତାଙ୍କଠାରୁ ବ୍ରହ୍ମଜ୍ଞାନ ସଂପର୍କରେ ଜ୍ଞାନଲାଭ କରିବାକୁ ସକ୍ଷମ ହୋଇଥିଲେ । ବର୍ଣ୍ଣ ଜାତି ନିର୍ବିଶେଷରେ ଗୁଣୀର ସମ୍ମାନର ବହୁ ଉଦାହରଣ ମହାଭରତରେ ମିଳିଥାଏ । ଯୁଧିଷ୍ଠିରଙ୍କ ଯଜ୍ଞରେ ଶୂଦ୍ରଗଣ ମଧ ଯଥୋଚିତ ଅଭ୍ୟର୍ଥନା ଲାଭକରିଥିଲେ ।

ଏଥିରୁ ସୁସ୍ପଷ୍ଟ ହୁଏ ଜନ୍ମିତ ଜାତି ସହିତ ଚରିତ୍ରର କୌଣସି ସମ୍ବନ୍ଧ ନାହିଁ । ଜନ୍ମଗତ ଜାତି ଅନୁସାରେ ସାମାଜିକ ସ୍ତର ଓ କାର୍ଯ୍ୟ ନିୟନ୍ତ୍ରଣ ହେଲେ ମଧ ସମାଜରେ ଶ୍ରଦ୍ଧା ଆକର୍ଷଣ ନିମିତ୍ତ ତାହା ଯଥେଷ୍ଟ ନଥିଲା । ବ୍ରାହ୍ମଣ କୁଳରେ ଜନ୍ମହୋଇ ବ୍ରାହ୍ମଣୋଚିତ କାର୍ଯ୍ୟ ନକଲେ ତାଙ୍କୁ କେବଳ ନାମଧାରୀ ବ୍ରାହ୍ମଣ ବା ବ୍ରାହ୍ମଣବ୍ରୁବ କୁହାଯାଉଥିଲା । (ଦ୍ରୋଣପର୍ବ) ସେ ବ୍ରାହ୍ମଣ ପରି ଶ୍ରଦ୍ଧା ପାଇପାରୁନଥିଲେ ଓ ସମାଜରେ ତାହା ମଧ ସମ୍ଭବପର ନଥିଲା । ସ୍ୱ ସ୍ୱ ବର୍ଣ୍ଣୋଚିତ କାର୍ଯ୍ୟରେ ଲିପ୍ତ ଥାଇ ସାଧୁଭାବରେ ଜୀବନଯାପନ କଲେ ନିଜ ବର୍ଣ୍ଣାଶ୍ରମୋଚିତ ଶ୍ରଦ୍ଧା ସମ୍ମାନ ମନୁଷ୍ୟ ପାଇପାରୁଥିଲା ।

ଯୁଧିଷ୍ଠିର ପଚାରିଲେ ହେ ମହାବାହୁ ପିତାମହ ଅମୃତ ଯେତେ ପିଉଥିଲେ ମଧ ଯେପରି ମନର ତୃପ୍ତି ଆସେ ନାହିଁ ସେମିତି ଆପଣଙ୍କର ଉପଦେଶମାନ ଆମକୁ ତୃପ୍ତ କରିପାରୁନାହିଁ । ଆମ୍ଭେ ଆଉ ଅନେକ କଥା ଶୁଣିବାକୁ ମନେ କରୁଛୁ । ମନୁଷ୍ୟର ନିଜର କଲ୍ୟାଣ ନିମିତ୍ତ କଅଣ କରିବା ଉଚିତ । ମନୁଷ୍ୟ କିପ୍ରକାର କଲ୍ୟାଣକର କର୍ମ କଲେ ଇହଲୋକ ଓ ପରଲୋକରେ ତାର ପରମ ମଙ୍ଗଳ ହୁଏ ତାହା କୁହନ୍ତୁ । ଉତ୍ତରରେ ଭୀଷ୍ମ କହିଲେ ଏ ବିଷୟରେ ମଧ ମୁଁ ପୂର୍ବପରି ଗୋଟିଏ ପ୍ରାଚୀନ ଆଖ୍ୟାନ ତୁମ୍ଭଙ୍କୁ ଶୁଣାଉଛି ।

ଏକଦା ସର୍ବଧର୍ମ ବିଧାନବିତ୍ ମହର୍ଷି ପରାଶରଙ୍କୁ ମହାଯଶସ୍ୱୀ ରାଜା ଜନକ ସମସ୍ତ

ପ୍ରାଣୀମାନଙ୍କ ନିମିତ୍ତ ଇହଲୋକ ଓ ପରଲୋକରେ କଲ୍ୟାଣକାରୀ ଓ ଜାଣିବାର ଯୋଗ୍ୟ ଜ୍ଞାନ ବର୍ଣ୍ଣନା କରିବାକୁ ଅନୁରୋଧ କଲେ ।

ଜନକ ପଚାରନ୍ତେ ପରାଶର ଋଷି | କହିଲେ ମୋକ୍ଷଧର୍ମ ଜ୍ଞାନ ତୁଦେ ଘୋଷି
ଧର୍ମରୁ ଶ୍ରେଷ୍ଠହୋଇ ଏ ଜଗତ ଯାକ | କଥା ଥିଲାପରି ତ ନ କରି ଆଲୋକ ।

ଧର୍ମରୁ ବଡ ହୋଇ ଦେହୀଙ୍କର କଥା | ନାହିଁଟି ହେ ତାଣ ଜନକ ମହାରଥୀ
ଧର୍ମଙ୍କର ଟି ଚାରି ଆଶ୍ରମ ପ୍ରବର୍ତ୍ତି | ଥିବାରୁ ମହାସୁଖେ ରହିଛନ୍ତି କ୍ଷିତି ।

ଏହି ସଂସାରରେ ଚାରି ପ୍ରକାର ଜୀବିକାର ବ୍ୟବସ୍ଥା କରାଯାଇଅଛି । ଯଜ୍ଞଆଦି କରି ଦକ୍ଷିଣା ନେବା ବ୍ରାହ୍ମଣ ପାଇଁ, କର ସଂଗ୍ରହ କ୍ଷତ୍ରିୟ ପାଇଁ, କୃଷି ଆଦି କରିବା ବୈଶ୍ୟ ପାଇଁ ଓ ଅନ୍ୟମାନଙ୍କ ସେବା ପାଇଁ ଚାକିରି କରିବା ଶୂଦ୍ର ପାଇଁ ନିର୍ଦ୍ଧାରିତ ବୃତ୍ତି । "ବଟୁ, ଲେଖନ ଦାଆଦଣ୍ଡି; ଗୋଟିଏ ନ ଧରିଲେ ଖାଆ ତଣ୍ଡି" ଓଡ଼ିଆ ଢ଼ଗ ରହିଛି । ଏହି ଜୀବିକା ଦୈବୀଚ୍ଛାରୁ ଚଳି ଆସୁଅଛି । ଏହି କର୍ମ କଲେ ପ୍ରାଣୀ ପାପ ଓ ପୁଣ୍ୟ ସଞ୍ଚୟ କରେ ।

ଚାରୋଟି ପ୍ରକାରର ହୋଇଛି ବେଭାର | ଧରନ୍ତୁ ତାହି ରାଜନ ମନେ କର
ସୁକୃତ କଲେ ଅନ୍ତକାଳେ ସୁଖପାଏ | ଦୁଷ୍କୃତ କରି ମଲେ ନରକକୁ ଯାଏ
ମନରେ ବଚନରେ ନୟନରେ ଯାହା | କରିଥାଏ ସଂଯୋଗ ତୁଅଇଟି ତାହା ।

କଲେଇ କରାଯାଇଥିବା ତମ୍ବାର ବାସନ ଯେପରି ସୁନା କି ରୂପା ପରି ଦେଖାଯାଏ କର୍ମ ପ୍ରଭାବରୁ ସେମିତି ପୁଣ୍ୟ କାମରୁ ସୁଖ ଓ ପାପ କର୍ମରୁ ଦୁଃଖ ଜାତ ହୋଇଥାଏ । ମଞ୍ଜି ନ ଥିଲେ ଯେପରି ଗଛ ବାହାରିବ ନାହିଁ ପୁଣ୍ୟକର୍ମ ନ କଲେ ସେମିତି ସୁଖ ଆସିବ ନାହିଁ । ପୂର୍ବ କର୍ମର ବଶୀଭୂତ ପ୍ରାଣୀ ସୁଖ ଦୁଃଖ ଭୋଗ କରେ । ନାସ୍ତିକମାନେ କହନ୍ତି ପ୍ରାରବ୍ଧ ପ୍ରତ୍ୟକ୍ଷରେ ଦେଖାଯାଉନାହିଁ । ଏହାର ଅବସ୍ଥିତି ଅନୁମାନ ମାତ୍ର । ଉତ୍ତରରେ କୁହାଯାଇଅଛି ମରିଗଲେ ଜୀବ ନିଜର କର୍ମ ମନେ ରଖିନଥାଏ କିନ୍ତୁ ତାକୁ ପୂର୍ବଜନ୍ମ କର୍ମର ଫଳ ଏହି ଜନ୍ମରେ ମନ, ବାଣୀ ନେତ୍ର ଓ କ୍ରିୟା ଦ୍ୱାରା କରାଯାଇଥିବା କାର୍ଯ୍ୟରେ ମିଳିଲେ ସେ ମନେକରେ ପୂର୍ବଜନ୍ମର କରିଥିବା କୌଣସି ପାପ ବା ପୁଣ୍ୟର ଫଳ ସେ ଭୋଗ କରୁଅଛି ।

ସୁକୃତ ଦୁଷ୍କୃତ ଯେ କ୍ଷୟାକ୍ଷୟହୋଇ | ପୁନଃ ପୁନଃ ଭୋଗ ତୁଅଇ ନରପାଇଁ
ଦମ, କ୍ଷମା, ଧୃତିବନ୍ତ, ଯେ ସତ୍ୟବାଦୀ | ହୋଇଲେ ସୁଖ ପାଏ ଲୋକ ନିର୍ବିବାଦୀ ।

ଇନ୍ଦ୍ରିୟ ସଂଯମ, କ୍ଷମା, ଧୈର୍ଯ୍ୟ, ତେଜ, ସନ୍ତୋଷ ସତ୍ୟଭାଷଣ, ଲଜ୍ଜା, ଅହିଂସା, ଦୁର୍ବଚନର ଅଭାବ ତଥା ଦକ୍ଷତା ସୁଖ ଭୋଗର କାରଣ ବୋଲି କୁହାଗଲା । (୨୯୦ ଅଧ୍ୟାୟ, ୨୦ଶ୍ଳୋକ) ।

ବିଦ୍ୱାନ ପୁରୁଷର ଆଜୀବନ ପାପ ପୁଣ୍ୟ ଉଭୟରେ ଅନାସକ୍ତ ରହି, ପରମାତ୍ମାଙ୍କଠାରେ ଚିତ୍ତ ନିବେଶ କରିବା କର୍ତ୍ତବ୍ୟ । ଜୀବ ନିଜ କର୍ମ ନିଜେ ଭୋଗେ, ଅନ୍ୟର କର୍ମଫଳ ଭୋଗ କରେ ନାହିଁ ।

ସୁକୃତ ଦୁଷ୍କୃତ ଏ ନିଯତ ବାହାର — ନୁହଁଇ ହିଁ ଜନକରାଜା ମନେ କର
ପରର ଦୁଷ୍କୃତ ଓ ସୁକୃତକୁ କେହି — ଜାଣିନାହିଁ ତ ଆଜିଯାଏ ଶୁଣା ନାହିଁ ।
ପର ଯେଉଁ କର୍ମକୁ କରିବ ଅସ୍ପୃହା — ସେହି କର୍ମରେ ଯାଇ ହୁଅଇଟି ଠିଆ ।

ବିବେକୀ ପୁରୁଷ ସୁଖ ଦୁଃଖରେ ସମଭାବ ହୋଇ ମୋକ୍ଷ ପ୍ରାପ୍ତି ନିମିତ୍ତ ଉଦ୍ୟମ କରୁଥାଏ । ସଂସାରୀ ସ୍ତ୍ରୀ, ପୁତ୍ର, ଧନ, ଆଦିରେ ଆସକ୍ତି ରହି ଭିନ୍ନ ମାର୍ଗରେ ଗତି କରି ବାରମ୍ବାର ଜନ୍ମ ମରଣ ଦୁଃଖ ଭୋଗ କରେ । ଅନ୍ୟ କରିବା କାମକୁ ନିନ୍ଦା କରି ନିଜେ ସେହି ପ୍ରକାର କାମ କରିବା ଦ୍ୱାରା, ଜୀବ ଉପହାସର ପାତ୍ର ହୋଇଥାଏ ।

ଭୟବନ୍ତ କ୍ଷତ୍ରିୟ, ସର୍ବଭକ୍ଷ ଦ୍ୱିଜ — କୃଷି ବିହୀନ ବୈଶ୍ୟ ନୃପ ହୀନରାଜ୍ୟ
ଶ୍ରମହୀନ କୁଳୀନ ଶୁଦ୍ର ଅନାଚାରୀ — ରୋଗୀ-ବୁଧ ଅଶୀଳ ଦୁଷ୍ଟାସ୍ତିରି
ମୂର୍ଖ ହୋଇ ବକ୍ତା, ଅଯୋଗୀ ସ୍ନେହ ହୀନ — ହେବାରେ ହେ ଧିକ୍କାରେ ଜାଣନ୍ତିଟି ଜାଣ ।

ଡରୁଆ କ୍ଷତ୍ରିୟ, ଭକ୍ଷ୍ୟାଭକ୍ଷ୍ୟ ବିଚାରହୀନ ବ୍ରାହ୍ମଣ, ଧନ ଉପାର୍ଜନ ଚେଷ୍ଟା କରୁନଥିବା ଅକର୍ମଣ୍ୟ ବୈଶ୍ୟ, ଅଳସୁଆ ଶୁଦ୍ର, ଉତ୍ତମ ଗୁଣ ନ ଥାଇ ବିଦ୍ୱାନ ବୋଲାଉଥିବା ବ୍ୟକ୍ତି, ସଦାଚାର ପାଳନ ନ କରୁଥିବା କୁଳୀନ ବ୍ୟକ୍ତି, ସତ୍ୟରୁ ଭ୍ରଷ୍ଟ ହୋଇଥିବା ଧାର୍ମିକ ପୁରୁଷ, ରୋଗୀ, ଦୁଷ୍ଟଚରିତ୍ରା ସ୍ତ୍ରୀ, ବିଷୟାସକ୍ତ ଯୋଗୀ, (ପଚମାନଦ୍ୱହେତୁ) କେବଳ ନିଜର ଖାଇବା ପାଇଁ ଭୋଜନ ପ୍ରସ୍ତୁତ କରୁଥିବା ମନୁଷ୍ୟ, ମୂର୍ଖ ବକ୍ତା, ରାଜା ଶୂନ୍ୟ ଦେଶ (ଶାନ୍ତି ଶୃଙ୍ଖଳ, ବିବର୍ଜିତ ଦେଶ) ଅଜିତେନ୍ଦ୍ରିୟ ହୋଇ ପ୍ରଜାମାନଙ୍କ ପ୍ରତି ସ୍ନେହ ନ ରଖିଥିବା ରାଜା - ଏମାନେ ସମସ୍ତେ ଶୋକଯୋଗ୍ୟ ଅର୍ଥାତ୍ ନିନ୍ଦନୀୟ ।

୨) କର୍ମଫଳର ଅନିବାର୍ଯ୍ୟତା, ପୁଣ୍ୟକର୍ମରୁ ଲାଭ ବିଷୟରେ ପରାଶର କହିଲେ :-

*ମନୋରଥ ରଥରେ ଜ୍ଞାନରଶ୍ମି ଯୋଚି*
*ଯେ ଯାଏ ତାହାକୁଟି ବୁଦ୍ଧିମନ୍ତ ପାଞ୍ଚି ।*

ଇନ୍ଦ୍ରିୟରୂପୀ ଘୋଡାରେ ଯୋଚାଯାଇଥିବା ଏହି ସୂକ୍ଷ୍ମ ଶରୀର ଏକ ରଥ । ଜ୍ଞାନ ଏହି ରଥର ଲଗାମ । ଏହି ଲଗାମ ଧରି ଯେଉଁ ବ୍ୟକ୍ତି ରଥରେ ଚଢ଼ି ଯାତ୍ରା କରେ ସେହି ଏକା ବୁଦ୍ଧିମାନ ପୁରୁଷ ଅଟେ ।

*ପୁଣ୍ୟକର୍ମ କଲେ ଲୋକର ଉତ୍କର୍ଷ*
*ବଢ଼ଇ ହେ ଜାଣ ଜନକ ରାଜ ଈଶ ।*

ମନୁଷ୍ୟ ଶରୀର ଆୟୁ ଦୁର୍ଲଭ । ଏହା ପାଇ କରି ଆତ୍ମାକୁ ନିମ୍ନଗାମୀ କରିବା ଉଚିତ ନୁହେଁ । ପୁଣ୍ୟକର୍ମର ଅନୁଷ୍ଠାନ କେବଳ ଆତ୍ମାର ଉନ୍ନତିରେ ସହାୟକ ହୋଇଥାଏ । ଦୁଷ୍କର୍ମକରି ସମାଜରୁ ବିତାଡିତ ପୁରୁଷ ସମ୍ମାନ ପାଇବାର ଯୋଗ୍ୟ ନୁହେଁ । ସେମିତି ସାତ୍ତ୍ୱିକ କର୍ମ କରି ସମ୍ମାନ ଅର୍ଜନ କରିଥିବା ପୁରୁଷ ଅନୌଚିତ କାର୍ଯ୍ୟ କଲେ ସମ୍ମାନ ହରାଇଥାଏ । ପୁଣ୍ୟକର୍ମରୁ ସୁଗତି ଓ ପାପରୁ ଦୁର୍ଗତି ହୋଇଥାଏ । ଅଜ୍ଞାନ ଦୋଷରୁ ପାପ କର୍ମ କଲେ ତପସ୍ୟା କରିବା ଦ୍ୱାରା ତାହା ନଷ୍ଟ ହୋଇଥାଏ ।

ଅଜ୍ଞାନରେ ପାପକୁ ଥିବ ଯେବେ କରି — ତା ନାଶ କରିଦେବ ତପସ୍ୟା ଆଚରି
ପାପ କରିଲେ ଯେବେ ଧନ ବୃଦ୍ଧି ହେବ — ଜାଣିବା ଜନ ତାହା କେବେ ନ କରିବ ।

ପାପ କର୍ମ ଯବାଶୁ ସବୁ ପୁଣ୍ୟ ଯାଏ — ଘରପରି ନରକକୁ ଟି ସେ ଅରଜାଏ
ଦେବତା ମୁନିମାନେ ଯାହା କରିଛନ୍ତି — ନର କରିବାକୁ ତା ନ କରିବ ମତି ।

ସମୟ ସମୟରେ ଦେବତା ଓ ମୁନିଋଷିମାନେ ଅନୁଚିତ କର୍ମ କରିଥିବା ଦୃଷ୍ଟାନ୍ତ ଅଛି । ଏଥିପାଇଁ ଧର୍ମାତ୍ମା ପୁରୁଷ ସେମାନଙ୍କର ନିନ୍ଦା କରିବ ନାହିଁ କିମ୍ବା ସେ ପ୍ରକାର କର୍ମରେ ପ୍ରବୃତ୍ତ ହେବ ନାହିଁ ।

*ଆପଣା ସାମର୍ଥ୍ୟକୁ ଚାହିଁ ଶୁଭକର୍ମ*
*କରୁଥିଲେ ଲୋକର ପ୍ରକାଶଇ ଧର୍ମ ।*

ଅପୋଡା ମାଟି ପାତ୍ରରେ ଜଳ ରଖିଲେ ତାହା ଶୀଘ୍ର ନଷ୍ଟ ହୋଇଯାଏ ମାତ୍ର ପୋଡାମାଟି ପାତ୍ରରେ ଜଳ ରଖିଲେ ତାହା ଦୀର୍ଘସ୍ଥାୟୀ ହୁଏ ଓ ଅନ୍ୟ ଜଳ ଏହା ସହିତ ମିଶି ମଧ ଏକାକାର ହୋଇ ପାତ୍ରର ଧାରଣା ଶକ୍ତି ଅନୁସାରେ ରହିଥାଏ । ସେହିପରି ପରିପକ୍ୱ ବିଶୁଦ୍ଧ ଅନ୍ତଃକରଣରେ ସଂପାଦିତ ସୁଖଦାୟକ ଶୁଭକର୍ମ ନିଶ୍ଚଳ ହୋଇ ରହିଥାଏ । ଅନ୍ୟପୁଣ୍ୟ କର୍ମ ତା ସହିତ ମିଶିଲେ ସେହି ପୁରୁଷ ମହାନ ପୁଣ୍ୟାତ୍ମା ହୋଇଥାଏ ।

ଶତ୍ରୁଜିଣି ପ୍ରଜାପାଳନ କରିରାଜା — ବନ ମଧ୍ୟେ ଗଲେ ସ୍ୱର୍ଗରେ ପାଏ ପୂଜା
ଧର୍ମାନ୍ୱିତ ହୋଇ ପ୍ରାଣୀଙ୍କଠାରେ ଦୟା — କରୁଥିବ ହୃଦରୁ ଛାଡିଦେଇ ମାୟା
ବୃଦ୍ଧ ଲୋକମାନଙ୍କୁ ପୂଜା କରୁଥିବ — ବଚନରେ ସ୍ୱପନରେ ହେଲେ ନ ଲଘିଂବ ।

୩) ଧର୍ମ ଉପାର୍ଜିତ ଧନର ଶ୍ରେଷ୍ଠତା ଅତିଥି ସତ୍କାରର ମହତ୍ୱ, ପାଞ୍ଚପ୍ରକାର ଋଣ ଶୋଧନର ଉପାୟ, ଭଗବଦ ଶ୍ରବଣର ମହିମା, ସଦାଚାର, ଗୁରୁଜନଙ୍କ ସେବାରୁ ଲାଭ ଆଦି ୨୯୨

ଅଧ୍ୟାୟରେ ବର୍ଣ୍ଣିତ ।

ଯେହି ଯାହାକୁ ଉପକାର ନ କରଇ
ସେ ଯାହାକୁ ଦେବାକୁ ସମର୍ଥ ନୁହଁଇ
ସବୁକଥା ଯାବରେ ଈଶ୍ୱରକାରଣ
ମୁଁ କଲିବୋଲିବାର ବ୍ୟର୍ଥ ଅଟେ ଜାଣ ।

ଦେବତା ପରି ମାତା ପିତା ସେବି ଥାଇଁ
ସମସ୍ତ ହେଲେ ପୁଣି ତାହାଙ୍କୁ ଛାଡଇ
ଏହା ଜାଣି ଆପଣା ଭଲ ହେବା ପାଇଁ
ଶୁଭ କର୍ମକୁ ବସି କରିବ ନିଠାଇ ।

ଶ୍ରେଷ୍ଠ ପୁରୁଷକୁ ଦିଆଯାଉଥିବା ଦାନ ଓ ଶ୍ରେଷ୍ଠ ପୁରୁଷ ଗ୍ରହଣ କରିଥିବା ପ୍ରତିଗ୍ରହ ଏ ଦୁଇଟିର ମାହାତ୍ମ୍ୟ ସମାନ ଅଟେ । ମାତ୍ର ଦାନ ଦେବା ସବୁଠାରୁ ମହତ୍ତର ।

ସୋଦର ଭାଇ ଯେବେ ଦଗାଦାର ହେବ
କହୁଥାଇଁ ଅବଶ୍ୟ ତାହାକୁ ଛାଡିବ
ସମାନ ଲୋକଠାରେ ଦେବ, ଦିଆଇବ
ଏହା ବାହାରେ ମଧ ଆପଣ ହିଁ ନେବ ।

ନ୍ୟାୟରେ ଯେଉଁ ଧନ ହୋଇବ ପ୍ରାପତି
ବଢ଼ାଇବ ସେ ଧନ ଦେଇ କରି ମତି
ଧର୍ମାର୍ଥୀ ଲୋକେ କେବେ ନୃଶଂସ କରମ
ଧନ ପାଇଁ ନ କରିବ ହେ ନର ଉତ୍ତମ ।

ସମର୍ଥକୁ ଚାହିଁଣ ସବୁ କାର୍ଯ୍ୟଯାକ
କରୁଥିବ ହୃଦରୁ ଛାଡିଦେଇ ଦବ
ରନ୍ତିଦେବ ଯେ ଅତିଥିଙ୍କୁ ଜଳ ଦେଲେ
ମହତ ଫଳ ପାଇ ସ୍ୱର୍ଗଲୋକେ ଗଲେ ।

ଶୈବରାଜା ଫଳ ପତ୍ରରେମାଠରଙ୍କୁ
ସନ୍ତୋଷ କରି ଗଲେ ମଧ ସେ ସ୍ୱର୍ଗକୁ
ଦେବତା, ଅତିଥି, ଭୃତ୍ୟ, ପିତୃ, ଋଷି ଋଣ
ଘେନି କରି ଜନ୍ମ ହୁଅନ୍ତି ଲୋକଗଣ ।

ବେଦ ପାଠ ପଢ଼ିଲେ ଋଷି ଋଣ ଯାଏ
ଯାଗରେ ସନ୍ତୁଷ୍ଟ ହୁଅନ୍ତି ଦେବତାଏ
ପାଳନା କଲେ ଭୃତ୍ୟମାନେ ତୋଷୀ ହୋଇ
ରହନ୍ତି ପାଖେ ବାନ୍ଧେ ଖଣ୍ଡାକୁ ପକାଇ ।

ଶ୍ରାଦ୍ଧ କଲେ ପିତୃଏ ହୋଇଣ ସନ୍ତୋଷ
ବୋଲନ୍ତି ବାବୁ ଅନ୍ତେ ପାଅ ସ୍ୱର୍ଗବାସ
ଧନ୍ୟରେ ବରଜିତ ହୋଇ ଋଷିମାନେ
ହୋମ କରି ବସିଲେ ଯାଇ ସ୍ୱର୍ଗସ୍ଥାନେ ।

ପ୍ରତ୍ୟେକ ମନୁଷ୍ୟ ଦେବତା, ଅତିଥି, ଭରଣପୋଷଣ ଯୋଗ୍ୟ କୁଟମ୍ବୀଲୋକ, ପିତୃଦେବ ଓ ଆତ୍ମାର ଋଣ ନେଇ ଜନ୍ମ ହୋଇଥାଏ । ଏହି ସବୁ ଋଣ ଜୀବଦ୍ଦଶାରେ ପରିଶୋଧ ନିମିତ୍ତ ସେ ଯତ୍ନବାନ ହେବା ଉଚିତ । ବେଦ ଶାସ୍ତ୍ର ଅଧ୍ୟୟନ ଦ୍ୱାରା ଋଷି ଋଣ, ଯଜ୍ଞଦ୍ୱାରା ଦେବତାମାନଙ୍କ ଋଣ, ଶ୍ରାଦ୍ଧ ଓ ଦାନ ଦ୍ୱାରା ପିତୃଋଣ, ସ୍ୱାଗତସାଦର ଓ ସେବାଦ୍ୱାରା ଅତିଥି ଋଣ ପରିଶୋଧ ହୁଏ । ସେହିପରି ବେଦବାଣୀ ଶ୍ରବଣ, ପଠନ ଓ ମନନ, ଯଜ୍ଞଶେଷେ ଅନ୍ନ ଭୋଜନ, ଅନ୍ୟ ପ୍ରାଣୀମାନଙ୍କର ରକ୍ଷା କରିବା ଫଳରେ ମନୁଷ୍ୟ ଆତ୍ମଋଣ ପରିଶୋଧ କରେ । ଭରଣଯୋଗ୍ୟ କୁଟୁମ୍ବୀୟ ମାନଙ୍କର ଗ୍ରସାଚ୍ଛାଦନର ବ୍ୟବସ୍ଥା ଫଳରେ ଜ୍ଞାତିଋଣ ପରିଶୋଧ କରାଯାଏ ।

ଋଚିକଙ୍କ ପୁତ୍ର ଦେବତାଙ୍କୁ ସ୍ତୁତି କଲେ — ବିଶ୍ୱାମିତ୍ରଙ୍କର ପୁତ୍ରତ୍ୱ ଲାଭ କଲେ ।
ଶିବଙ୍କ ପ୍ରସନ୍ନେ ଉଶନା ଶୁକ୍ର ନାମ — ରହିଲେ ବୋଲାଇଲେ ଋଷିଙ୍କ ସତ୍ତମ
ଅସିତ, ଦେବଳ ଆଦି ଯେ ଋଷିଗଣ — ବିଷ୍ଣୁ ସ୍ତୁତି କରି ପାଇଲେ ସିଦ୍ଧି ଜାଣ ।

ଋଚିକଙ୍କ ପୁତ୍ର ଯଜ୍ଞରେ ଦେବତାମାନଙ୍କୁ ବେଦମନ୍ତ୍ର ଦ୍ୱାରା ସ୍ତୁତି କରି ବିଶ୍ୱାମିତ୍ରଙ୍କର ପୁତ୍ର ହେଲେ । ମହର୍ଷି ଉଶନା ଦେବାଧିଦେବ ମହାଦେବଙ୍କୁ ପ୍ରସନ୍ନ କରି ତାଙ୍କର ଶୁକ୍ରତ୍ୱ ପାଇଲେ ଓ ସେହି ନାମରେ ପ୍ରସିଦ୍ଧ ହେଲେ । ସେ ମଧ ଦେବୀ ପାର୍ବତୀଙ୍କୁ ସ୍ତୁତି କରି ଆକାଶରେ ଶୁକ୍ର ଗ୍ରହ ରୂପରେ ରହି ଆନନ୍ଦରେ ଯଶ ଲାଭ କଲେ ।

ଅସିତ, ଦେବଳ, ନାରଦ, ପର୍ବତ, କକ୍ଷୀବାନ ଜମଦଗ୍ନିପୁତ୍ର ପରଶୁରାମ, ମନକୁ ବଶରେ ରଖିଥିବା ଋଷି ତାଣ୍ଡବ, ବଶିଷ୍ଠ, ଜମଦଗ୍ନି, ବିଶ୍ୱାମିତ୍ର, ଅତ୍ରି, ଭରଦ୍ୱାଜ, ହରିଶ୍ମଶ୍ରୁ କୁଣ୍ଡଧାର ଶ୍ରୁତଶ୍ରବା ଆଦି ମହର୍ଷିମାନେ ଏକାଗ୍ରଚିତ୍ତରେ ବେଦମନ୍ତ୍ରରେ ବିଷ୍ଣୁଙ୍କୁ ସ୍ତୁତିକରି ତାଙ୍କ କୃପାରୁ ତପସ୍ୟାରେ ସିଦ୍ଧି ପାଇଥିଲେ । ପୂଜାର ଯୋଗ୍ୟ ନଥିବା ପୁରୁଷ ମଧ ଭଗବାନ ବିଷ୍ଣୁଙ୍କୁ ସ୍ତୁତି କରି ପୂଜନୀୟ ସଜ୍ଜ ହୋଇ ପାରିଲେ ଓ ବିଷ୍ଣୁଙ୍କୁ ମଧ ପାଇଲେ । ଧର୍ମ ପାଳନ ପୂର୍ବକ ଉପାର୍ଜିତ ଧନ, ଶ୍ରେଷ୍ଠ ଅଟେ । ଅଧର୍ମ ଉପାୟରେ ଅର୍ଜିତ ଧନ ଧାକ୍କାର ଯୋଗ୍ୟ । ପ୍ରବଳ ଧନ ଇଚ୍ଛା ରଖି ସଂସାରରେ ଶାଶ୍ୱତ ଧର୍ମ ପରିତ୍ୟାଗ କରିବା ନିନ୍ଦନୀୟ ଅଟେ ।

ଧନାକାଂକ୍ଷୀ ହୋଇଲେ ନ ଛାଡିବ ଧର୍ମ — ନାଶ କରଇ ଜାତ ହୋଇଲେ ଅଧର୍ମ
ବେଦମାନେ ଯେ ନିତି ଅଗ୍ନିଙ୍କରେ ସ୍ଥିତ — ହୋଇଅଛନ୍ତି ହେ ନୃପକୁଳ ସୁତ
ଯେଉଁ ବ୍ରାହ୍ମଣ ଟି କରମ କରୁଥାଏ — ଅଗ୍ନିଠାରୁ ଅଧିକ ଜାଣି ତାକୁ ରାଧେ ।

ଅଗ୍ନି, ଆତ୍ମା, ମାତା , ଜନ୍ମଦାତା ପିତା ଓ ଗୁରୁ ଏମାନଙ୍କର ଯଥାଯୋଗ୍ୟ ସେବା କରିବା ଅବଶ୍ୟ କର୍ତ୍ତବ୍ୟ । ଅଭିମାନ ତ୍ୟାଗ କରି ଯେଉଁ ପୁରୁଷ ବୃଦ୍ଧଙ୍କର ସେବା କରେ, ବିଦ୍ୱାନ ଓ କାମ ଭୋଗରେ ଅନାସକ୍ତ ଥାଇ ସମସ୍ତଙ୍କୁ ପ୍ରେମ ଭାବରେ ଦେଖେ, ଚତୁର ପଣିଆଁ ନ ଦେଖାଇ ଧର୍ମରେ ସଂଲଗ୍ନ ରହେ, ଅନ୍ୟ ମନୁଷ୍ୟକୁ ହେଳା କରେ ନାହିଁ କିମ୍ବା ହିଂସା କରେ ନାହିଁ ସେହି ପୁରୁଷ ଏହି ସଂସାରରେ ଶ୍ରେଷ୍ଠ ବୋଲି ଗଣାଯାଏ ଓ ସଦାଚାରୀ ପୁରୁଷମାନେ ତାହାର ଆଦର କରିଥାନ୍ତି ।

୪) ବର୍ଣ୍ଣାଶ୍ରମରେ ସେବାବୃତ୍ତିର ପ୍ରାଧାନ୍ୟ ସତସଙ୍ଗର ମହିମା ଓ ଚାରିବର୍ଣ୍ଣର ଧର୍ମ ପାଳନର ମହତ୍ୱ ୨୯୩ ଅଧାୟରେ ବର୍ଣ୍ଣିତ । ଚାରିବର୍ଣ୍ଣରେ ସ୍ୱଧର୍ମ ସେବାକାରୀ ଶୂଦ୍ରର ଅନ୍ୟ ତିନି ବର୍ଣ୍ଣର ସେବା କରିବା କର୍ତ୍ତବ୍ୟ ବୋଲି ପରାଶର କହିଲେ । ପୂର୍ବ ଆଚରିତ କର୍ମରେ ତାର ରୋଜଗାର ନ ମେଣ୍ଟିଲେ ସେ ଅନ୍ୟ ବୃତ୍ତି ଅବଲମ୍ବନ କରିବ ।

ସକଳ ଅବସ୍ଥାରେ ସାଧୁଙ୍କର ସଙ୍ଗ — କରିବ ଛାଡ଼ି ଦେଇ ମନ୍ଦ କ୍ରୀଡ଼ା ରଙ୍ଗ
ଉଦୟ ପର୍ବତରେ ରବି ଉଦେ ପରି — ଦିଶେ ଲୋକ ସାଧୁ ସଙ୍ଗରେ ଦଣ୍ଡଧାରୀ

ଏହି ସବାଷରୁ ଅନିତ୍ୟ ଏସଂସାର    ହୃଦେ ଧରି ରାଜନ ସାଧୁ ସଙ୍ଗକର
ସୁଖ ଦୁଃଖ ଜାଣି ଯେ କରେ ଶୁଭକଥା    ତାକୁ ବାଧି ନପାରେ ଅମଙ୍ଗଳ ବ୍ୟଥା
ଅଧର୍ମେ ବଡ଼ ଫଳ ଯେବେ ଟି ହୋଇବ    ତେବେ ତାହାକୁ ଲୋକ ଲୋଡା ନ କରିବ ।

ଉଦୟ ସୂର୍ଯ୍ୟର ନିକଟହୋଇ ଉଦୟାଚଳ ପର୍ବତର ପ୍ରତ୍ୟେକ ବସ୍ତୁ ଯେପରି ଚମକି ଉଠେ ସାଧୁପୁରୁଷଙ୍କ ନିକଟରେ ସେହିପରି ରହୁଥିବା ପ୍ରତ୍ୟେକ ମନୁଷ୍ୟ ସଦଗୁଣରେ ସୁଶୋଭିତ ହୁଏ । ଧଳା ବସ୍ତୁକୁ ଯେଉଁ ରଙ୍ଗ ଦିଆଯାଏ ତାହା ସେ ରଙ୍ଗ ଗ୍ରହଣ କରେ । ସେହିପରି ସଙ୍ଗ ଅନୁସାରେ ମନୁଷ୍ୟର ଚରିତ୍ର ଗଠନ ହୁଏ । ସେଥିପାଇଁ ସଦଗୁଣରେ ଅନୁରାଗ ରଖିବା ଉଚିତ । ଦୋଷଯୁକ୍ତ କର୍ମ ମନୁଷ୍ୟକୁ ଅନିତ୍ୟ ଓ ଚଞ୍ଚଳ କରେ । ଧର୍ମ ବିରୋଧୀ କର୍ମ ଅଧିକ ଲାଭ ଦାୟକ ହେଲେ ମଧ ବୁଦ୍ଧିମାନ ପୁରୁଷ ଏହା ଗ୍ରହଣ କରି ନ ଥାନ୍ତି କାରଣ ଏହା ଜଗତରେ ହିତକାରକ ନୁହେଁ । ଧର୍ମ ଅନୁକୂଳ କାର୍ଯ୍ୟ ପରିଣାମରେ ସୁଖ ଦେଇଥାଏ । ଅନ୍ୟର ହଜାର ଗାଈ ହରଣ କରି ରାଜା ଦାନଦେଇ ପ୍ରଜାକୁ ସୁରକ୍ଷା ନ ଦେଲେ ସେ ନାମକୁ ମାତ୍ର ଦାନୀ ଓ ରାଜା ହୋଇ ରହନ୍ତି । ପ୍ରକୃତରେ ସେ ଚୋର ଓ ଡକାୟତ ।

*ବ୍ରହ୍ମା ସରଜନା ରାଜାକୁ କରିଛନ୍ତି*
*ସବୁ ପ୍ରାଣୀ ପାଳିବା ପାଇଁ ହେ ନୃପତି ।*

ବ୍ରହ୍ମା ଏକ ପୁତ୍ର ଜାତ କଲେ । ତାର ନାମ ପର୍ଯ୍ୟନ୍ୟ ଦେଲେ । ସେ ସମସ୍ତ ଲୋକକୁ ଧାରଣ କରିବା ନିମିତ୍ତ ତତ୍ପର ହେଲେ । ତାହାଙ୍କର ଅର୍ଥାତ ଜଳର ପୂଜା ଉପଯୋଗ କରି ବୈଶ୍ୟ କୃଷି ଓ ପଶୁପାଳନ କରି ସମୃଦ୍ଧିଶାଳୀ ହେଲେ । ତାହାର ରକ୍ଷା ରାଜାଙ୍କର କର୍ତ୍ତବ୍ୟ ବ୍ରାହ୍ମଣମାନେ, କୁଟିଳତା ଶଠତା ଓ କ୍ରୋଧ ତ୍ୟାଗକରି ବୈଶ୍ୟର ଅନ୍ନ ଧନ ସାହାଯ୍ୟରେ ଯଜ୍ଞ (ଲୋକହିତକର କାଯ୍ୟ)ରେ ପ୍ରବୃତ୍ତ ହେଲେ । ସେବକ ଶୁଦ୍ର ଯଜ୍ଞଭୂମି ପ୍ରସ୍ତୁତ ହେବାରେ ସାହାଯ୍ୟ କଲେ । ଏହିପରି ଧର୍ମର ରକ୍ଷା କରାଗଲା

ଧର୍ମଥିଲେ ସବୁ ପ୍ରାଣୀଏ ସୁଖପାଇ    ଦିନକୁ ହରୁଥାନ୍ତି ଉସ୍ଵକୁ ନ ବହି ।
ପ୍ରଜାଏ ସୁଖ ଯଦିପାନ୍ତି ରାଜା ଘେନି    ସେ ରାଜାଙ୍କୁ ପୂଜନ୍ତି ସ୍ଵର୍ଗେ ସୁରମଣି ।

ନ୍ୟାୟ ଧନ କଡ଼ାକୁ ଅନ୍ୟାୟରେ ଶହେ    ଟଙ୍କାର ସରି ନୋହେ ଜାଣ ହେ ନରରାୟେ ।
ବ୍ରାହ୍ମଣକୁ ଯେ ଯେତେ କରଇ ସତକାର    ସେ ତେତିକି ସୁକୃତ ଲଭେ ମନେକର ।

ନ ମାଗୁଁ ଯେ ଦ୍ଵିଜ ଲୋକଙ୍କୁ ଦାନ ଦିଏ    ସେ ଦାନକୁ ଉତ୍ତମ ବୋଲି କହେ ରାୟେ
ମାଗିଲେ ଦାନ ଦେଲେ ବୋଲାଏ ମଧମ    ଅବଜ୍ଞାରେ ଦେବାର ଅଟଇଅଧମ ।

ବ୍ରାହ୍ମଣ ଇଂନ୍ଦ୍ରିୟ ସଂଯମରେ, କ୍ଷତ୍ରିୟ ଯୁଦ୍ଧ ବିଜୟରେ, ବୈଶ୍ୟ ନ୍ୟାୟ ଅର୍ଜିତ ଧନରେ, ଶୁଦ୍ର ସେବାର୍ଜିତ ଧନରେ କୁଶଳତା ପ୍ରଦର୍ଶନ କଲେ ନିଜେ ଶୋଭାପାଇଥାଏ ।

୫) ବର୍ଣ୍ଣାଶ୍ରମର ଜୀବିକା, ନିନ୍ଦନୀୟ କର୍ମତ୍ୟାଗ, ମନୁଷ୍ୟଠାରେ ଅସୁରଭାବର ଉତ୍ପତ୍ତି, ଭଗବାନଙ୍କ ଦ୍ୱାରା ଏହାର ନିବାରଣ ଓ ସ୍ୱଧର୍ମ ଅନୁସାରେ କର୍ତ୍ତବ୍ୟ ପାଳନର ଉପଦେଶ ୨ ୯୪ ଅଧ୍ୟାୟରେ ଦିଆଯାଇଅଛି ।

ପରାଶର କହିଲେ ସେବକ ଶୁଦ୍ର ନିଜ ବ୍ୟବସାୟରେ ଉତ୍ତମ ଆୟ ନପାଇଲେ ସେ ଅନ୍ୟ ବୃତ୍ତି ଧରିବ ।

''ବ୍ରାହ୍ମଣ ପ୍ରତିଗ୍ରହ ( ଦାନଗ୍ରହଣ) କ୍ଷତ୍ରୀ ଆୟୋଧନ (ଯୁଦ୍ଧରେ ବିଜୟ) ବୈଶ୍ୟ ନ୍ୟାୟ (କୃଷିବାଣିଜ୍ୟ) ଶୁଦ୍ର ସେବାର୍ଜିତଧନ ।'' ବର୍ଣ୍ଣାଶ୍ରମ ଧର୍ମ ପାଳନ ସଂକ୍ରାନ୍ତରେ ମହର୍ଷି ପରାଶର କହିଲେ :-

ତାଙ୍କର କର୍ମ କଲେ ସଫଳ ହୁଏ ସିଦ୍ଧି      ଶାସ୍ତ୍ରରେ ମଧ ଏହାଲେଖିଛନ୍ତି ବିଧି ।
ଶୁଦ୍ର କର୍ମ ଛାଡ଼ି ବ୍ରାହ୍ମଣ ତ୍ରଇବର୍ଣ୍ଣ      କର୍ମ କରିଲେ ନିନ୍ଦା ନ ପାଏ ଜାଣ ।

ବି.ଦ୍ର- କେବଳ ସେବା କାର୍ଯ୍ୟ ବ୍ରାହ୍ମଣ ପାଇଁ ନିଷିଦ୍ଧ କରାଯାଇଛି ।

ନପାରେ ଯେବେ ଶୁଦ୍ର ସେବା ବୃତ୍ତି କରି      ପୋଷିବ ପେଟ ଗୋରୁ ପାଳନ ଆଚରି ।
ମଦ୍ୟ ମାଂସକୁ ଛାଡ଼ିସବୁ ବାରବାର      ଶୁଦ୍ର ଲୋକ କଲେ ଯେ ଦୋଷ ନେହେ ତାର ।

ରଙ୍ଗମଞ୍ଚରେ ସ୍ତ୍ରୀ ବେଶଧରି ଅଭିନୟ କରିବା, ଖେଳ ଦେଖାଇବା, ବହୁରୂପୀ ବେଶଧରି ଲୋକଙ୍କୁ ଆମୋଦ ଦେବା, ମଦ ମାଂସ ବିକି ଜୀବିକାଅର୍ଜନ କରିବା, ଲୁହା ଓ ଚମଡ଼ାର ବେପାର କରିବା, ଏସବୁ ନିନ୍ଦିତ କର୍ମ ବୋଲି ଗଣା ଯାଏ । ସବୁ ବର୍ଣ୍ଣ ପ୍ରତି ଏହା ପ୍ରଯୁଜ୍ୟ । ଯାହାର ବଂଶ ପରଂପରା ଅନୁସାରେ ଏହି ବୃତ୍ତିଚଳି ଆସୁଅଛି ସେ ତାକୁ ଅନୁସରଣ କରିପାରେ ମାତ୍ର ନୂଆ କରି ଏ ବୃତ୍ତି କରିବା ନିଷେଧ । ପୂର୍ବରୁ ଏହି ବୃତ୍ତି ଥିଲେ ମଧ ଏହା ଛାଡ଼ି ଦେଲେ ମହତ ଫଳ ମିଳିଥାଏ । ଯଶ ଅର୍ଜନ କରି ମନୁଷ୍ୟ ଯଦି ଗର୍ବକରେ ବା ଲୋଭରୁ କୌଣସି ଅନୁଚିତ କାର୍ଯ୍ୟ କରେ ତଥାପି ତାର କାର୍ଯ୍ୟ ଅନୁସରଣ କରିବା ଉଚିତ ନୁହେଁ । ପୁରାଣରେ ଶୁଣା ଅଛି ପୂର୍ବକାଳରେ ଅଧିକାଂଶ ମନୁଷ୍ୟ ଧାର୍ମିକ ସଂଯମୀ ଓ ନ୍ୟାୟବାନ ଥିଲେ । ସେ ଯୁଗରେ ଅପରାଧିମାନଙ୍କୁ କେବଳ ଭର୍ତ୍ସନା କରିବା ଦଣ୍ଡ ଥିଲା ।

ପୂର୍ବକାଳରେ ଦୋଷ କଲେ ପ୍ରଜାଗଣେ      ରାଜାମାନେ ଦଣ୍ଡ ଦେଉଥିଲେ ବଚନେ
ଧର୍ମରେ ତ ରାଜାଏ ପ୍ରଜାଙ୍କୁ ପାଳିଲେ      ଏ ଯୋଗୁ ଅସୁରେ ସହି ନ ପାରିଲେ ।

ପ୍ରଜାଙ୍କ ଦେହରେ ରହନ୍ତେ ଘର କରି — ଧର୍ମରୁ ଗଲା ତାଙ୍କର ବୁଦ୍ଧିମାନ ଫେରି
ଏସବାଗରୁ ଦର୍ପ, ମୋହ, କ୍ରୋଧମାନ — ବଢ଼ିଲା ଅବିଚ୍ଛନ୍ନେ ଜନକ ରାଜନ ।

ବଚନ ଦଣ୍ଡେ ଯାହା ଲାଜ ପାଉଥିଲେ । — ଦେହଦଣ୍ଡ ପାଇ ସୁଦ୍ଧା ତାହା ନ ମାନିଲେ
ଏହି କାଳରେ ଶିବ ଦେବଙ୍କ ବଚନେ — ତିନିପୁର ଯାକ ନାଶିଲେ ବାଣମୁନେ ।

ମହାମୋହ ନାମରେ ଗୋଟିଏ ଅସୁର — ଥିଲା । ତାକୁ ପାଇଲେ ଶୂଳେ ଦେବହର
ଅସୁରେ ନାଶଯାନ୍ତେ ନରେ ପୂର୍ବପରି — ଧର୍ମ ଆଚରିଲେ ଜନକ ଦଣ୍ଡଧାରୀ ।

ଇନ୍ଦ୍ର ସୁର ରାଜ୍ୟରେ ଅଭିଷେକ ହେଲେ — ସପ୍ତଋଷି ଦଣ୍ଡ ଦେବାରେ ଯୁକ୍ତ ହେଲେ
ଏ ଉତ୍ତାରୁ ବି ପୃଥୁ ନାମେ ରାଜା ହୋଇ — ଦୋଷ ବୁଦ୍ଧି ପ୍ରାଣୀଙ୍କି ଦଣ୍ଡିଲେ ନିଠାଇଁ ।

ଏହା ବାହାରେ ଦଣ୍ଡ ଦେବାକୁ ପୃଥକ — ପୃଥିକ ରାଜା କଲେ ହେ ରାଜନାୟକ
ଦାନବେ ତ ନୃପତି ପଦ ପାଇଥିଲେ — ପୂର୍ବ ବୃତ୍ତି ପରି ସେ ବୃତ୍ତି ଆଚରିଲେ ।

ତାହା ଜାଣି ସିନା ମୁଁ କହୁଛି ତୁମ୍ଭକୁ — ଛାଡ଼ ଏ ହୃଦୟରୁ ହିଂସା କରମକୁ
ସ୍ୱଧର୍ମରେ ପୁତ୍ର ନାତି ପରଜାଗଣ — ପାଳନ କର ଆହେ ଜନକ ରାଜନ ।

ଗୁଣରେ ଅନୁରକ୍ତ ହୋଇଲେଟି ପ୍ରଜା — ସ୍ୱରଗରେ କରିବେ ତୁମ୍ଭଙ୍କୁ ବିଡୋଜା (ଇନ୍ଦ୍ର)
ଧର୍ମଶୀଳ ହୋଇଣ ଲୋକରେ ସଞ୍ଚାର — ଯେ କରୁଛି ମଙ୍ଗଳ ହେଉଛି ତାହାର ।

ମନୁଷ୍ୟ ସଦଗୁଣରେ ଅନୁରାଗ ରଖିବ । ଦୋଷଠାରୁ ଦୂରରେ ରହିବ । ଗୁଣହୀନ ଓ ଦୁର୍ବୁଦ୍ଧି ମନୁଷ୍ୟ କେବଳ ନିଜଗୁଣର ଅଭିମାନ ଯୋଗେ ସନ୍ତୁଷ୍ଟ ହୋଇରହେ । ଧର୍ମ ଅଧର୍ମ ବିଚାର କେବଳ ମନୁଷ୍ୟର ଅଛି । ଅନ୍ୟ କୌଣସି ପ୍ରାଣୀଙ୍କର ନାହିଁ । ଧର୍ମଶୀଳ ବିଦ୍ୱାନ ମନୁଷ୍ୟ ସ୍ୱେଚ୍ଛାରେ ବା ଅନିଚ୍ଛାକ୍ରମେ ସବୁ ପ୍ରାଣୀଙ୍କ ପ୍ରତି ଆତ୍ମଭାବ ରଖିବ ଓ କୌଣସି ପ୍ରାଣୀ ପ୍ରତି ଈର୍ଷାଭାବ ରଖିବ ନାହିଁ । ମନୁଷ୍ୟ ମନ କାମନା ଓ କର୍ମ ସଂସ୍କାର ରହିତ ହୋଇଗଲେ ମିଥ୍ୟାଚାରଠାରୁ ଦୂରେଇ ଯାଏ । ଫଳରେ ତାହାର ଆତ୍ମକଲ୍ୟାଣ ଆସିଥାଏ ।

୬) ବିଷୟାସକ୍ତ ମନୁଷ୍ୟର ପତନ, ତପୋବଳର ଶ୍ରେଷ୍ଠତା, ଦୃଢ଼ଭାବରେ ସ୍ୱଧର୍ମ ପାଳନର ନିର୍ଦ୍ଦେଶ ୨୯୫ ଅଧ୍ୟାୟରେ ।

ଗୃହୀ ଲୋକର ଧର୍ମବିଧି କହିଲାଇଁ — ତପବିଧିକୁ ଏବେ କହିବା ବତାଇ ।
ଗୃହୀଲୋକ ସଙ୍ଗ ଆଶ୍ରାରେ ପ୍ରତିଦିନ — ପୁତ୍ର ଭାର୍ଯ୍ୟା ଧନରେ ବଢ଼ାଅ ମନ ।

ଅନିତ୍ୟ ବୋଲିଣ ସଂସାର ନ ଜାଣଇ — ରାଗ ଦ୍ୱେଷ ରଜ୍ଜୁରେ ଥାଏ ବନ୍ଧହୋଇ ।
ରାଗ ଦ୍ୱେଷ ସବାଶୁ ପୁତ୍ର ମିତ୍ରେ ପ୍ରୀତି — ବଢ଼ାଇଣ ଅନ୍ତିମେ ଲଭଇ ବିପତ୍ତି ।

ମାନ ଗର୍ବ ମୋହ ରହନ୍ତି ଘରକରି ହୃଦୟରେ ଜ୍ଞାନ ଦିଅନ୍ତି ଏଣୁ ହରି ।
ବୁଦ୍ଧିଯୁକ୍ତ, ଧର୍ମବାଦୀ, ଯେତେକ ନର ଧର୍ମ କଥା ମୂଳ ଅଟଇ ତାହାଙ୍କର ।

ଆଧି ବ୍ୟାଧି ଦୁଇରେ ହୋଇବାରୁ ଯୁତ ଛାଡଇ ପୁତ୍ର ମିତ୍ରଠାରୁ ସ୍ନେହ ଚିତ୍ତ ।

ରାଗ ଓ ଦ୍ୱେଷର ବଶୀଭୂତ ହୋଇ ଯେତେବେଳେ ମନୁଷ୍ୟ ଦ୍ରବ୍ୟ ସଂଗ୍ରହରେ ଆସକ୍ତ ହୁଏ ସେତେବେଳେ ମୋହର କନ୍ୟା, ରତି ତା ପାଖରେ ପହଞ୍ଚିଯାଏ । ରତିର ଉପାସନାରେ ଲାଗିଲେ ମନୁଷ୍ୟ ଭୋଗକୁ କୃତାର୍ଥ ମାନି ବିଷୟ ସୁଖଠାରୁ ଅଧିକ ଆଉ କୌଣସି ସୁଖ ଅଛି ବୋଲି ମନେକରେ ନାହିଁ । କୌଣସି କର୍ମ କରିବା ଅନୁଚିତ ଜାଣି ମଧ୍ୟ ଧନ ଲାଭ ନିମିତ୍ତ ସେଥିରେ ପ୍ରବୃତ୍ତ ଥାଏ । ସନ୍ତାନ ସନ୍ତତି ଙ୍କ ସ୍ନେହରେ ଅନ୍ଧରହି ସେମାନଙ୍କର ବିୟୋଗରେ ଶୋକକରି ଦୁଃଖପାଏ । ପ୍ରକୃତରେ ଯେଉଁମାନେ ଶୁଭ କର୍ମର ଅନୁଷ୍ଠାନ କରନ୍ତି ସେମାନେ ଏଥିରୁ ସୁଖ ପାଇବାର ଆଶା ରଖିନଥାନ୍ତି । ସ୍ତ୍ରୀ, ପୁତ୍ର ଆଦି ମିଳନର ସୁଖ ପରିତ୍ୟାଗ କରି ତପ ସାଧନରେ ପ୍ରବୃତ୍ତ ହେବା ବିବେକୀ ବ୍ୟକ୍ତି ସଂସାରରେ ଦୁର୍ଲଭ ।

ନିର୍ବେଦ-ଜାତ ଯୋଗୁଁ ଶାସ୍ତ୍ର ଦେଖି ବନେ ରହି ତପ ଆଚରେ ହୋଇ ଦୁଃଖୀ
ଏ ରୂପେ ହୋଇ ଲୋକ ତପସ୍ୟାକୁ କଲେ ଲେଖନ୍ତି ଜାଣ ତାକୁ ସଂସାରରେ ଭଲେ ।

ପୂର୍ବେ ପ୍ରଜାପତି ବହୁତ ତପ କଲେ ଏ ସଂସାରେ ପ୍ରଜାମାନଙ୍କୁ ସରଜିଲେ
ଦେବତାମାନେ ତପସ୍ୟାରେ ସିଦ୍ଧ ହୋଇ ରହିଛନ୍ତି ଜାଣ ରାଜନ ମନ ଦେଇ ।

ମର୍ତ୍ତ୍ୟଲୋକରେ ଯେତେ ରାଜା ହୋଇଛନ୍ତି ତପସ୍ୟାର ଫଳ ସେ ଜାଣ ନରପତି
ଘୋଡ଼ା, ହାତୀ, ପାଲିଙ୍କି ଅଳଙ୍କାର, ଦାସ ତପସ୍ୟା ଫଳେ ଭୋଗ ହୁଅଇ ବିଶେଷ ।

ଦିବ୍ୟଘର, ଦିବ୍ୟ ରମଣୀ, ଦିବ୍ୟ ପୁଷ୍ପ ତପୋବଳରେ ଟି ମିଳଇ ଅମାପ
ତପୋବଳେ ଇନ୍ଦ୍ର ପଦବୀ ସିଦ୍ଧ ହୋଏ ତପରୁ ବଡ଼ ହୋଇ କଥା ନାହିଁ ରାୟେ ।

ତପସ୍ୟା ନ ଥିଲେ କୁଟୀରୁ ଛିଡାବାସ ଛାଡ଼ିନ ଯାଇ ପୂର୍ବେ ଜାଣ ନର ଈଶ
ସୁଖ ଦୁଃଖ ଏ ଦୁଇ କଥାରେ ଲୋଭକୁ କରିବ ତ୍ୟାଗ ଯେବେ ଲୋଡ଼ିବ ଭଲକୁ ।

ଅସନ୍ତୋଷ ହୋଇଲେ ଲୋକ ଦୁଃଖ ପାଏ ଏହା ଜାଣି ଛାଡ଼ିବ ତା ସବୁ ଉପାୟେ
ଲୋଭ ସକାଶରୁ ବୁଦ୍ଧି ହୁଅଇ ଧ୍ୱଂସ ଆୟୁଷ ଥାଉ କେବେ ଲାଗେ କାଳ ପାଶ ।

ଏହା ଜାଣି ନିଷ୍ପାପ ହେବା ପାଇ ଯେହି ତପ କରୁଅଛ ତା ସୁଖ କ୍ଷୟ ନାହିଁ
ଧର୍ମରେ ଯେଉଁ ଲୋକ ସନ୍ଦେହ ହୃଦୟ କରଇ, ଭୋଗ କରେ ସେ ନରକଚୟ ।

ଦୁଃଖ ସୁଖ ଦୁଇରେ କର୍ତ୍ତି ଯେହୁଥାଏ ଶାସ୍ତ୍ର-ଚକ୍ଷୁ ତାହାର ଜଗତେ ବୋଲାଏ
ନଦୀ, ନଦ, ସମୁଦ୍ର ଆଶ୍ରେ କଲା ପ୍ରାୟେ ଗୃହସ୍ଥ ଧର୍ମେ ସବୁ ଧର୍ମ ଅଛି ରାୟେ ।

୭) ବିଭିନ୍ନ ବର୍ଣ୍ଣର ଉତ୍ପତି, ନାନା ବର୍ଣ୍ଣର ବିଶେଷ ଓ ସାମାନ୍ୟ ଧର୍ମ, ସତ୍କର୍ମର ଶ୍ରେଷ୍ଠତା, ହିଂସା ରହିତ ଧର୍ମର ବର୍ଣ୍ଣନା ୨୯୬ ଅଧ୍ୟାୟରେ ଦିଆଯାଇଅଛି ।

ବ୍ରାହ୍ମଣ ଆଦିଚାରି ବର୍ଣ୍ଣ କିପରି ଉତ୍ପତ୍ତି ହେଲେ, ଜନକ ଋଷିଙ୍କର ଏହି ପ୍ରଶ୍ନର ଉତ୍ତରରେ ପରାଶର କହିଲେ :-

ଯିଏ ଯାହାଠାରୁ ଜନମ ହୁଅଇ — ତାକୁ ତାହାର ଆତ୍ମା ବୋଲି କରି କହି
ବିଶେଷ ଧର୍ମକୁ ସେ ଲଭେ କେଉଁ ରୂପେ — ଏହା ମୋତେ କହିବା ହେଉ କସି ଆପେ
ପରାଶର ବୋଇଲେ ଯେ ଯେତେ ନିଷ୍ପାପ — ହୁଅଇ ସେ ତେତେ ଅଧିକ ହୋଏ ନୃପ ।

ତଥାପି ତପସ୍ୟାର ନ୍ୟୁନତା ଅନୁସାରେ ମନୁଷ୍ୟ ନିକୃଷ୍ଟ ଜାତି ପାଇଥାଏ । ଉତ୍ତମ କ୍ଷେତ୍ର ଓ ବୀଜରୁ ଜାତ ସନ୍ତାନ ପବିତ୍ର ହୁଏ । ପ୍ରଜାପତି ବ୍ରହ୍ମା ସୃଷ୍ଟି ସମୟରେ ମୁଖ, ଭୁଜ, ଉରୁ ଓ ପାଦରୁ ମନୁଷ୍ୟ ଉତ୍ପନ୍ନ କଲେ ଏହା ଆଗରୁ କୁହାଯାଇଅଛି । ବ୍ରହ୍ମାଙ୍କର ଚାରିଅଙ୍ଗରୁ ଚାରିବର୍ଣ୍ଣର ମନୁଷ୍ୟ ସୃଷ୍ଟି ହେଲେ । ଏହି ଚାରିବର୍ଣ୍ଣର ସମ୍ମିଶ୍ରଣରେ ବିଭିନ୍ନ ସଂକର ସୃଷ୍ଟି ହେଲେ। (ଅତୋଽନ୍ୟେଭ୍ୟତ୍ୟୋ ତିସକ୍ତା ଯେ ତେ ବୈ ସଂକରଯାଃ ସ୍ମୃତାଃ) ହେ ନରେଶ୍ୱର କ୍ଷତ୍ରିୟ, ଅତିରଥ, ଅମ୍ବଷ୍ଠ, ଉଗ୍ର, ବୈଦେହ, ଶ୍ୱପାକ, ପୁକ୍କସ, ସ୍ତେନ, ନିଷାଦ, ସୁତ, ମାଗଧ, ଅଯୋଗ, କରଣ, ବ୍ରାତ୍ୟ ଓ ଚାଣ୍ଡାଳ ଏମାନେ ବ୍ରାହ୍ମଣ ଆଦି ଚାରିବର୍ଣ୍ଣରେ ମିଶ୍ରଣ ଓ ଅନୁଲୋମ ଓ ପ୍ରତିଲୋମ ବିବାହ ଫଳରେ ଉତ୍ପନ୍ନହେଲେ । (ଶ୍ଳୋକ ୮-୯)

ପୁଣି ପ୍ରଶ୍ନୋତ୍ତର :-

ବ୍ରହ୍ମାଙ୍କଠାରୁ ମାନବେ ହେଲେ ଜାତ — ନାନା ଗୋତ୍ର କିଂପାଇ ହୋଇଲା କହତ
ମୃଗ, ଗାଈ, ସର୍ପ, ଗର୍ଭରୁ ଜାତ ହୋଇ — ବୋଲାଇଲେ ମହୀରେ ମୁନି କାହିପାଇଁ ?

ପରାଶର ବୋଇଲେ ଦ୍ୱିଜ ବୀଜଗୁଣ — ସବାଶରୁ ମୁନି ସେ ବୋଲାଅନ୍ତି ଜାଣ
ପୁଣି ସେମାନେ ଜାଣ ତପସ୍ୟା କରନ୍ତି — ପାପ ତାଙ୍କ ଦେହେ ନ ପାରେ କରିଛିତି ।

ବଶିଷ୍ଠ, ଋଷ୍ୟଶୃଙ୍ଗ, ଯବକ୍ରୀତ, କୃପ, — କମଠ, କାକ୍ଷୀବାନ, ମତଙ୍ଗ, କାଶ୍ୟପ,
ଆୟୁ ଦତ୍ତ, ଦ୍ରୋଣ, ଦ୍ରୁପଦ, ମତ୍ସ୍ୟଋଷି, — ତପକରି ସିଦ୍ଧି ପାଇଲେ ବୋଲି ଭାଷି ।

ଅଙ୍ଗିରା, କଶ୍ୟପ, ବଶିଷ୍ଠ, ଭୃଗୁଗୋତ୍ର — ମୂଳ ଅଟନ୍ତି ହେ ଜାଣ ଶକ୍ତିପୁତ୍ର ।

ଚାରିଗୋତ୍ର ପ୍ରଥମେ ଥିଲେ । କର୍ମ ଅନୁସାରେ ଅନ୍ୟ ଗୋତ୍ର ଉତ୍ପନ୍ନ ହେଲେ । ମହର୍ଷିମାନଙ୍କ ତପସ୍ୟା ଫଳରେ ପରବର୍ତ୍ତୀ ଗୋତ୍ର ସବୁ ସାଧୁ ସମାଜରେ ସୁବିଖ୍ୟାତ ଓ ସମ୍ମାନିତ ହେଲା ।

ଜନକ ବୋଇଲେ ହେ ବର୍ଣ୍ଣର ବିଶେଷ — ଅବିଶେଷ ଧରମ କରତ ପ୍ରକାଶ
ପରାଶର ବୋଇଲେ ବ୍ରାହ୍ମଣ ଯେ ହେବ — ଦାନ ଘେନି ଯାଗ କରିବ, ପଢ଼ାଇବ ।

କ୍ଷତ୍ରିୟ ହୋଇ ଯେବେ ପ୍ରଜାରକ୍ଷା କରେ    ଆଛା କଲା ସେ ବୋଲି ବୋଲାନ୍ତି ସଂସାରେ
କୃଷି ପାଳନ ବୈଶ୍ୟର ବିଶେଷ    ଧର୍ମ ବୋଲି କରି ଜାଣ ହେ ନର-ଈଶ ।

ତିନିବର୍ଣ୍ଣ ଯାକକୁ ଶୁଦ୍ର ସେବା କଲେ    ବିଶେଷ ଧର୍ମ କଲା ବୋଲି ତାକୁ ଭଲେ
ଚାରିବର୍ଣ୍ଣ ଯାକର ସାଧାରଣ ଧର୍ମ    ଯାହାକୁ ବୋଲି ତାହା ଶୁଣ ନରୋତ୍ତମ ।

ଅନୃସଂଶତା, ହିଂସା, ପ୍ରମାଦ ଅଭାବ    ଶ୍ରାଦ୍ଧ, ଅତିଥିଙ୍କି ପୂଜିବ କହି ରାଗ
ଅକ୍ରୋଧ, ସତ୍ୟ, ଶୌଚ, ତିତୀକ୍ଷାମସ୍ନାନ    ଅନସୂୟା, ସନ୍ତୋଷ ଆଦି କର୍ମମାନ ।

ସାଧାରଣ ଧରମ ବୋଲି କରି କହି    ମୋ କଥାକୁ ଜାଣ ଜନକ ନରସାଇଁ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଙ୍କ ଦ୍ୱିଜନାମ    କୃତ ହେବାର ଟି କହନ୍ତି ନରୋତ୍ତମ ।

ତିନିବର୍ଣ୍ଣ ଯାକର ଧର୍ମେ ଅଧିକାର    ସେବା କରିବା କର୍ମ କେବଳ ଶୁଦ୍ରର
ତିନିବର୍ଣ୍ଣ ଯେବେ ତପସ୍ୟା ନ କରନ୍ତି    ନରକେ ପଡ଼ି ଦୁଃଖ ସମୂହ ଭୁଞ୍ଜନ୍ତି ।

ସଦ୍‌ବୃତ୍ତିକି ଯେଉଁ ଲୋକଟି କରଇ    ଇହ ପର ଦୁଇରେ ବାଧା ତାର ନାହିଁ
ଜନକ ବୋଇଲେ ହେ କର୍ମ ଜାତି ଦୁଇ    କଥାରେ କେ ଦୂଷିତ ପ୍ରାଣୀକି କରଇ ।

ଏହା ମୋ ଆଗରେ କହତ ପରାଶର    ଶୁଣିବା ପାଇଁମନ ହେଉଛି ମୋହର
ପରାଶର ବୋଇଲେ କର୍ମ, ଜାତି ଦୁଇ    ଦୋଷକାର ବୋଲି ଲେଖନ୍ତି ନରସାଇଁ ।

ଏଥିରେ ଯେ ବିଶେଷ ଅଛି ତୁମ୍ଭ ଆଗେ    କହିବା ଯେବେ ପୁଚ୍ଛୁଅଛ ହେ ସରାଗେ
ଜାତିହୀନ ଲୋକ କରିଲେ ଶୁଭକର୍ମ    ଲୋକରେ ପରକାଶ ହୁଏ ତାର କର୍ମ ।

ଜାତିଟିରେ ପ୍ରଧାନ ହେଲେ କାର୍ଯ୍ୟନାହିଁ    ଅକର୍ମ କଲେ ନରକରେ ପଡ଼େ ଯାଇଁ
ଜନକ ବୋଇଲେ ହେ କେଉଁ କର୍ମ କଲେ    ଧର୍ମ କଲା ବୋଲି ବୋଲନ୍ତି ଲୋକେ ଭଲେ ।

ପରାଶର ବୋଇଲେ ଅହିଂସ୍ର କର୍ମକୁ    କଲେ ଲୋକ ଭୋଗକରେ ସ୍ୱରଗକୁ ।

ଯେଉଁ ମନୁଷ୍ୟ ସନ୍ନ୍ୟାସ ଦୀକ୍ଷାଗ୍ରହଣ କରି ଅଗ୍ନିହୋତ୍ର ତ୍ୟାଗକରି ଉଦାସୀନ ଭାବରେ ସବୁ କାମ କରି ଚାଲେ, ସବୁପ୍ରକାର ଚିନ୍ତାରୁ ଦୂରରେ ରହେ, କଲ୍ୟାଣକାରୀ କର୍ମର ପଥରେ ରହି ବିନୟ ଓ ଇନ୍ଦ୍ରିୟ ସଂଯମ ଆଦି ଗୁଣମାନ ନିଜଠାରେ ରଖେ, ତୀକ୍ଷ୍ଣବ୍ରତ ପାଳନ କରେ, ଓ ସବୁ କର୍ମ ଆସକ୍ତିକୁ ତ୍ୟାଗ କରେ ସେହି ଏକା ଅବିନାଶି ବ୍ରହ୍ମପଦ ପାଇଥାଏ । ଜୀବଜଗତରେ ସବୁ ବର୍ଣ୍ଣର ଲୋକ ନିଜ ନିଜ ଧର୍ମ ଅନୁସାରେ ଧର୍ମପାଳନ କରି ସତ୍ୟବାଦୀ ହୋଇ ପାପ କର୍ମମାନ ପରିତ୍ୟାଗ କରି ସ୍ୱର୍ଗଲୋକ ଲାଭ କରିଥାନ୍ତି । ଏଥିରେ କୌଣସି ସନ୍ଦେହ ନାହିଁ । (ଯାନ୍ତି ସ୍ୱର୍ଗଂ ନାତ୍ର କାର୍ଯ୍ୟେ ବିଚାରଃ) ।

୮) ନାନା ପ୍ରକାର ଧର୍ମ ଓ କର୍ତ୍ତବ୍ୟର ଆଲୋଚନା କରି ଉପଦେଶମାନ ୨୯୭ ଅଧାୟରେ ଦିଆଯାଇଛି ।

ପରାଶର କହିବାକୁ ଆରମ୍ଭ କଲେ ହେ ରାଜା ଗୁଣହୀନ ବ୍ୟକ୍ତିର ସଂସାରରେ ପିତାମାତା ଗୁରୁଜନ ଓ ସ୍ତ୍ରୀ ଏମାନେ କେହି ନିଜର ନୁହନ୍ତି । ପିତା ମନୁଷ୍ୟର ସର୍ବଶ୍ରେଷ୍ଠ ଦେବତା । କେହି କେହି ପିତାକୁ ମାତାଠାରୁ ମଧ ବଡ଼ବୋଲି ବତାଇଥାନ୍ତି ।

ନିର୍ଗୁଣ ଲୋକଙ୍କର ପିତା ପୁତ୍ର ମାତା
କଳତ୍ର ଆଦି ମଧ ନ ପବାନ୍ତି ଚିନ୍ତା
ଲୋକମାନଙ୍କର ଯେ ପରମ ଦେବତା
ଅଟଇଟି ରାଜନ ଜାତ କଲା ପିତା ।

ପିତାକୁ ପ୍ରତି ମାତା ଅଧିକ ଅଟଇ
ଗୌରବରେ ଜାଣ ଜନକ ନରସାଇଁ
ଜ୍ଞାନର ଲାଭଟିକି ବୋଲୁଥାନ୍ତି ବଡ଼
ନ କରଇ ତାହା ସେହିଟି ଅତି ମୂଢ଼ ।

କ୍ଷତ୍ରିୟ ଯୁଦ୍ଧେ ହତ୍ୟା ଟେକି ମଲେ
ଦେବଙ୍କୁ ଅଧିକ ଭୋଗ ସେ ଯାଇ କରେ
ପଳାଇବ ନିଶ୍ଚେ କହିବ ଯେ ନର
ନ କରିବ ତାହାଙ୍କୁ ଯୁଦ୍ଧରେ ସଂହାର ।

ସାନ ଲୋକ ବଡ଼ଲୋକର ହାତେ ମଲେ
ଯୁଦ୍ଧରେ ଭଲ ଗତି ପ୍ରକାଶଇ ଭଲେ
ହୀନ ଲୋକ ହାତରେ ହୋଇଲେ ନିଧନ
ଯୁଦ୍ଧରେ ନରକଟି ହୁଏ ଜାଣ ସ୍ଥାନ ।

ସାଧୁଲୋକ ଯେବେ କରିବେ ହିଂସା କର୍ମ
ତେବେ ତାହାକୁ କସି ଶିଖାଇବ ଧର୍ମ
ଗୃହସ୍ଥ ଲୋକ ବାଲିଶଯ୍ୟାଟିଏ କରି
ମଲେ ଜାଣ ହୁଏ ପାତକ ହନ୍ତକାରୀ ।

ଶରୀରର କେବଳ ହେଉଅଛି ନାଶ
ଆତ୍ମା ସବୁବେଳେ ଅଟେ ଟି ପରକାଶ
ଇନ୍ଦ୍ରିୟମାନଙ୍କରେ ମନ ଅଟେ ଶ୍ରେଷ୍ଠ
ମନକୁ ପ୍ରତି ଆତ୍ମା ଅଟଇ ଗରିଷ୍ଠ ।
ସବୁ ପ୍ରାଣୀଙ୍କରେ ମନୁଷ୍ୟ ଜନ୍ମସାର
ମନୁଷ୍ୟକୁ ପ୍ରତି ବଡ଼ ହେ ଦ୍ୱିଜବର
ଦ୍ୱିଜମାନଙ୍କ ମଧେ ବୁଦ୍ଧିମନ୍ତ ଲୋକ
ବୁଦ୍ଧିମନ୍ତରେ ଆତ୍ମଜ୍ଞାନୀଟି ଅଧିକ ।

ଜ୍ଞାନୀଙ୍କଠେ ଶ୍ରେଷ୍ଠ ଅଟଇ ବ୍ରହ୍ମଚାରୀ
ମୋ କଥାକୁ ଜାଣ ଜନକ ଦଣ୍ଡଧାରୀ ।

ଦ୍ୱିଜଙ୍କ ମଧରେ ବୁଦ୍ଧିମାନ, ବୁଦ୍ଧିମାନ ମାନଙ୍କ ମଧରେ ଆତ୍ମଜ୍ଞାନୀ ଶ୍ରେଷ୍ଠ, ଆତ୍ମଜ୍ଞାନୀମାନଙ୍କ ମଧରେ ଅହଂକାର ଶୂନ୍ୟ ସର୍ବଶ୍ରେଷ୍ଠ ଅଟେ । ଜନ୍ମ ପରଠାରୁ ମୃତ୍ୟୁ ମନୁଷ୍ୟର ପଛରେ ଗୋଡ଼ାଉଅଛି । ସବୁ ପ୍ରାଣୀମାନେ ସତ୍ତ୍ୱ ଆଦି ଗୁଣ ଦ୍ୱାରା ପ୍ରେରିତ ହୋଇ ବିନାଶଶୀଳ କର୍ମରେ ପ୍ରବୃତ୍ତ ରହନ୍ତି । ମୃତ୍ୟୁ ଅବଶ୍ୟମ୍ଭାବୀ ।

ଉତ୍ତରାୟଣେ ଯେଉଁ ଲୋକ ଛାଡ଼େ ପ୍ରାଣ
ପୁଣ୍ୟ କୃତ ବୋଲିଣ ତାହାକୁଟି ଜାଣ
ବନ୍ଧନ, କିଟ, ବ୍ୟାଘ୍ର,ସର୍ପେ ଯେବେ ମରେ
ଲେଖା ଯାଥାଉ ଜାଣ ସେ ପାପ ମୃତ୍ୟୁରେ ।

ପୁଣ୍ୟକର୍ମ ଲୋକର ପାପ ତାକୁ ଫୁଟି । ଯିବାରୁ ସେ ଯାଆନ୍ତି ବ୍ରହ୍ମାଙ୍କୁଟି ଭେଟି
ମଧ୍ୟକର୍ମା ଲୋକଙ୍କ ଆଖି, ମୁଖ ବାଟେ । ପରାଣ, ଯାନ୍ତି କରି ଇନ୍ଦ୍ରଙ୍କୁଟି ଭେଟେ ।

ଅଧର୍ମକର୍ମା ଲୋକଙ୍କର ଗୁହ୍ୟଦ୍ୱାର । ବାଟରେ ପ୍ରାଣ ଯାନ୍ତି ନର୍କେ କରେ ଘର
ଅଜ୍ଞାନରୁ ଅଧିକ ହୋଇ ଶତ୍ରୁନାହିଁ । ଯା ଘେନି ନରକରେ ପଡ଼େ ଲୋକ ଯାଇ ।

ଜ୍ଞାନ ନିମିତ୍ତ ରେ ବୃଦ୍ଧକୁ ଉପାସନା । କରିବ ଯେ ହେବ ସଂସାରେ ମହାମନା ।

ପୁରୁଷର ପରମ ଶତ୍ରୁ ଅଜ୍ଞାନ । ଏହା ମନୁଷ୍ୟକୁ କ୍ରୁର କର୍ମରେ ପ୍ରବର୍ତ୍ତାଏ । ବେଦୋକ୍ତ ଧର୍ମପରାୟଣ ବୃଦ୍ଧ ମନୁଷ୍ୟର ସେବାକରି ମନୁଷ୍ୟ ପ୍ରଜ୍ଞା ଅର୍ଥାତ ସ୍ଥିର ବୁଦ୍ଧି ପାଏ । ଏହି ପ୍ରଜ୍ଞାବାଣରେ ଅଜ୍ଞାନ ଲୋପହୁଏ ।

ବେଦ ପଢ଼ି ତପ କରିବ ଯାଗ କରି । ବ୍ରହ୍ମଚାରୀ ହୋଇଲେ ଦେଖେ ସ୍ୱର୍ଗପୁରୀ
ନ ଥିଲେ ଭୋଗ, ଆତ୍ମରକ୍ଷଣେ ଯତନ । କରୁଥିବ ଜାଣିବାନ୍ତି ସେ ହେବ ଜନ ।

ସବୁ ଜନ୍ମ ପ୍ରତିକି ମନୁଷ୍ୟେ ଚଣ୍ଡାଳ । ଜନ୍ମକୁ ପାଇଲେ ହେ ବଡ଼ ମହୀପାଳ ।
ମନୁଷ୍ୟ ଜନ୍ମକୁ ଯେନିନ୍ଦା କରିଥାଏ । ଧର୍ମ ତାଣ ତାର ଦେହରୁ ଛାଡ଼ିଯାଏ ।

ସମଦୁଃଖ ସୁଖ ହୁଅଇ ଯେଉଁ ନର । କରନ୍ତି ପୂଜା ତାକୁ ଦେବ ପୁରନ୍ଦର
ମନୁଷ୍ୟ ଜନ୍ମ ହେଲେ ତୀର୍ଥ ବ୍ରତକରି । ଅନ୍ତଃ କାଳେ ଯାଇ ବସିବ ସ୍ୱର୍ଗପୁରୀ ।

ଘରେ ମଲା ଲୋକଙ୍କୁ ଯାନେ ଘେନିଯିବ । ଶ୍ମଶାନେ ବେଦଶାସ୍ତ୍ର ବିଧିରେ ପୋଡ଼ିବ
ଯେତେକ ଦାନ ପୁଣ୍ୟ ଜଗତରେ ଅଛି । ମନୁଷ୍ୟ ଜନ୍ମ ପାଇଁ ଲୋକ ତା କରୁଛି ।

ସାରାଂଶ : ପିତା ମନୁଷ୍ୟର ସର୍ବଶ୍ରେଷ୍ଠ ଦେବତା । ଜ୍ଞାନ ଲାଭ ଶ୍ରେଷ୍ଠ ଲାଭ । ଯୁଦ୍ଧ କ୍ଷେତ୍ରରେ କ୍ଷତ୍ରିୟ କ୍ଷତ ଓ ବାଣ ଦ୍ୱାରା ଦଗ୍ଧ ହୋଇ ଯଦି ମରେ ସେ ଦେବଦୁର୍ଲଭ ଗତି ଲାଭକରେ, କ୍ଷତ୍ରିୟ ଧର୍ମର ନିୟମ ଅନୁସାରେ ଯୁଦ୍ଧରେ ଏକାକୀ ଭୟଭୀତ, ନିରସ୍ତ୍ର, କ୍ରନ୍ଦନରତ, ଯେ ପିଠି ଦେଖି ପଳାଇ ଯାଉଥିବ, ଯେ ଅସ୍ତ୍ରତ୍ୟାଗ କରିଦେବ, ଯୁଦ୍ଧ ଉଦ୍ୟମରୁ ବିରତ, ରୋଗୀ ବା ବୃଦ୍ଧ ଶତ୍ରୁମାନଙ୍କ ପ୍ରତି ଅସ୍ତ୍ର ପ୍ରୟୋଗ ନିଷିଦ୍ଧ କରାଯାଇଅଛି । ପାପୀ ପାପାଚାରୀ ହୀନ ମନୁଷ୍ୟ ହାତରେ ମୃତ ମନୁଷ୍ୟ ନରକଗତି ପାଇଥାଏ । ମନୁଷ୍ୟର ଶ୍ରେଷ୍ଠ ଶତ୍ରୁ ଅଜ୍ଞାନ । ବେଦୋକ୍ତ ଧର୍ମ ସଂପନ୍ନ ବୃଦ୍ଧ ପୁରୁଷଙ୍କର ସେବା କରି ପ୍ରଜ୍ଞା (ସ୍ଥିରବୁଦ୍ଧି) ମିଳେ । ଅଜ୍ଞାନ ଶତ୍ରୁକୁ ଜିତିବା ପ୍ରଯତ୍ନସାଧ ହେଲେ ମଧ ସେ ଏଥିରେ କୃତକାର୍ଯ୍ୟ ହୁଏ ।

ମନୁଷ୍ୟ ଜନ୍ମ ଶ୍ରେଷ୍ଠ ଜନ୍ମ । ଏହି ଜନ୍ମରେ କେବଳ ଶୁଭକର୍ମ କରି ଆତ୍ମାର ଉଦ୍ଧାର କରି ହୁଏ । ଦୁର୍ଲଭ ମନୁଷ୍ୟ ଜନ୍ମ ପାଇ ଯେ ପରପ୍ରତି ଦ୍ୱେଷ ଭାବ ରଖେ, ଧର୍ମର ଅନାଦର କରେ ଓ

ମନରେ ନିଜ କାମନା ଦ୍ୱାରା ଆସକ୍ତ ରହେ ସେ ମହାନ ଜନ୍ମ ଲାଭର ଫଳ ପାଇ ନଥାଏ । ଅନ୍ୟ ପକ୍ଷରେ ଯେଉଁ ମନୁଷ୍ୟ ସମସ୍ତ ପ୍ରାଣୀଙ୍କୁ ସମାନ ସ୍ନେହ କରେ, ଦୀପ ସମସ୍ତଙ୍କୁ ଏକାପରି ତେଜ ଦେବାପରି ସମସ୍ତଙ୍କଠାରେ ସମାନ ସ୍ନେହ ଦେଖାଏ, ବିଷୟଭୋଗରେ ବିଶେଷ ଆସକ୍ତି ରଖିନଥାଏ ସେ ପରଲୋକରେ ସମ୍ମାନିତ ହୋଇଥାଏ । ସବୁଲୋକଙ୍କୁ ସାନ୍ତ୍ୱନା ଦେଇ, କ୍ଷୁଧାର୍ତ୍ତଙ୍କୁ ଅନ୍ନଦେଇ, ସମସ୍ତଙ୍କୁ ପ୍ରିୟବଚନ କହି, ସୁଖ ଦୁଃଖରେ ସମଭାବ ରଖି ମନୁଷ୍ୟ ଇହଲୋକ ଓ ପରଲୋକ ଉଭୟଠାରେ ପ୍ରତିଷ୍ଠା ଲାଭ କରିଥାଏ ।

୯) ନବମ ଅଧ୍ୟାୟ ବିଶିଷ୍ଟ ପରାଶର ଗୀତାରଶେଷ ଅଧ୍ୟାୟ ୨୯୮ରେ ମହର୍ଷି ପରାଶର ରାଜା ଜନକଙ୍କର ଶଙ୍କା ମୋଚନ ନିମିତ୍ତ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ଅଛନ୍ତି ।

ପ୍ରଥମେ ଜନକଙ୍କ ପ୍ରଶ୍ନ ଶ୍ରେୟ ସାଧନ କଣ ? ଉତ୍ତମ ଗତି କିପରି ହୁଏ କେଉଁ କର୍ମ କେବେ ନଷ୍ଟ ହୋଇନଥାଏ ଓ କେଉଁଠାକୁ ଗଲେ ଜୀବ ପୁଣି ଏ ସଂସାରକୁ ଫେରେ ନାହିଁ । ଏହିଭଳି ପରେ ପରେ ଅନେକ ପ୍ରଶ୍ନର ଉତ୍ତରରେ ପରାଶର ସମସ୍ତ ବିଷୟ ବୁଝାଇଦେଲେ ।

ଜନକ ପଚାରିଲେ କି ଶ୍ରେୟ କି ଗତି
କେଉଁଠାକୁ ଗଲେ ନ ନିବର୍ତ୍ତଇ ଲୋକ
ଲୋକ ନାଶ ଯାଏ କଲେ କେଉଁ ବୃତ୍ତି
ଏହା ମୋତେ କହ ହେ ଋଷିଙ୍କ ତିଳକ ।

ପରାଶର ବୋଇଲେ ଅନାସକ୍ତ ହେଲେ
ଜ୍ଞାନୀ ଲୋକଙ୍କର ଅଟେ ଭଲ ଗତି
ଲୋକଙ୍କର ଶ୍ରେୟ ପ୍ରକାଶ ହୁଏ ଭଲେ
ତପକୁଟି ଅକ୍ଷୟ ବୋଲିଣ କହନ୍ତି ।

ଅଧର୍ମ ନାଶ କରି ଧରମ ରଖିଲେ
ଦାନ ଦେବା ପ୍ରତିକି ଅଭୟ ଦେବାର
ଲୋକ ଲେଖାଯାଏ ଏ ଜଗତରେ ଭଲେ
ଅଧିକ ଅଟେ ହେ ରାଜନ ମନେ କର ।

ବିଷୟ ମଧ୍ୟଥିଲେ ବୁଦ୍ଧିମନ୍ତ ଲୋକ
ଅଜ୍ଞାନୀକି କେବେ ହେଁ ପାପ ନ ଛାଡଇ
ଦେହକୁ କେବେ ବାଧି ନ ପାରଇ ଶୋକ
ଜ୍ଞାନୀ ଜ୍ଞାନ ଅନଳରେ ଦହି ପକାଅଇ ।

ରାଗ କ୍ରୋଧକୁ ଛାଡି ଥାଇ ଯେଉଁ ନର
ଜ୍ଞାନବନ୍ତ ପୁରୁଷମାନଙ୍କର ଗୁଣ
ସଂସାରେ ଥିଲେ ବାଧି ନପାରେ ସଂସାର
କେଳକୁ କେଳ ବଢ଼ଇତ ନରରାଣ ।

କଳତ୍ର, ଧନ, ଜନ, ଛାଡଇଟି ନର
ବିଷୟରେ ଆସକତି ଯେ ହୋଇଥାଏ
ସ୍ୱର୍ଗକୁ ଯିବା ବୁଦ୍ଧି ହୃଦେ କରେ ଘର
ହିତକୁ ନ ଜାଣଇ କହିଲେ ସେ ରାଏ ।

ଆବାଲ୍ୟରୁ ବୃଦ୍ଧ ଅବସ୍ଥା ହେବା ଯାଏ
ଏହା ଜାଣି ଜ୍ଞାନବଳରେ ଦେହୀ ଲୋକ
ମୃତ୍ୟୁଟି ଘୋଟିଥାଏ ପ୍ରାଣୀଙ୍କର କାଏ
ନାଶ କରୁଥିବ ଦେହରୁ ପାପ ଯାକ ।

ମୋକ୍ଷ ଧର୍ମ ନ ଜାଣି ଭବେ ବଦ୍ଧ ହୋଇ
ଜ୍ଞାନମାର୍ଗେ ଥିବା ଲୋକର ଇହ ପର
ପ୍ରାଣୀଏ ଭୁଲୁଛନ୍ତି ଜାଣ କହୁଥାଇ
ଦୁଇରେ ସୁଖ ଅଛି ରାଜା ମନେ କର ।

ଯୋଗୀ ହେଲେ ପରଂବ୍ରହ୍ମକୁ ଦେଖଇ ଅଯୋଗୀ ସଂସାରର ଦୁଃଖରେ ମଜ୍ଜଇ
ପନ୍ନଗ ପବନକୁ ଖାଇଲା ପରାଏ ମୃତ୍ୟୁ ପ୍ରାଣୀମାନଙ୍କୁ ଖାଉଛିଟି ରାଏ ।

ଯେଉଁ କର୍ମ ଲୋକ ପୂର୍ବରେ ଥାଏ କରି ଜନ୍ମ ହେଲେ ସେ କର୍ମ ଭୁଞ୍ଜେ ଦଣ୍ଡଧାରୀ
ଦୁଃଖ ସୁଖରୁ ପୂର୍ବ କର୍ମକୁ ଜାଣିବ ଜ୍ଞାନର ଅଭ୍ୟାସରେ ବସି ଦିନ ନେବ ।

ଶୁଭ କର୍ମ କରିଲେ କସନ, ସଦନ ଏ ବାହାରେ ମିଳଇ ଉତ୍ତମ ସ୍ତ୍ରୀ, ଧନ
ପରାଶର ଋଷିଙ୍କ ଏହି ବାଣୀ ଶୁଣି ମହାତୋଷ ହେଲେ ଜନକ ନରମଣି ।

ପିତାମହ ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଲେ ମହାତ୍ମା ପରାଶର ମୁନିଙ୍କ ମୁଖରୁ ଏହି ସମସ୍ତ ଉପଦେଶମାନ ଶୁଣି ଧର୍ମଜ୍ଞଶ୍ରେଷ୍ଠ ରାଜା ଜନକ ଅତିଶୟ ଆନନ୍ଦିତ ହେଲେ ।



ଗୋଟିଏ ବିଲେଇ ଗୋଟିଏ ମୂଷାକୁ ଛକିଥାଏ ଖାଇବାକୁ । ମୂଷାଟି ସବୁବେଳେ ଡରି ଡରି ଥାଏ । ଯାହା କାମ କରୁ ପଛକେ ବିଲେଇ ରୂପ ତା' ମନରେ ସବୁବେଳେ ଥାଏ । ସବୁବେଳେ ତାର ଇଛା ଯେ ବିଲେଇ ଜନ୍ମଟିଏ ପାଇଲେ ତା'ର ଆଉ କାହାକୁ ଡର ରହନ୍ତା ନାହିଁ । ଏହିପରି ଭାବୁ ଭାବୁ ଦିନେ ବିଲେଇ ହାବୁଡରେ ପଡି ତା'ର ପ୍ରାଣ ଗଲା । ପ୍ରାଣ ଗଲାବେଳେ ମଧ ସେଇ ବିଲେଇ ରୂପ ତା ମନରେ ଥିଲା । ତେଣୁ ତା'ର ପରଜନ୍ମ ହେଲା ବିରାଡ଼ି । ବିରାଡ଼ି ଛୁଆ ଥିବାବେଳେ ତାକୁ ଦିନେ କୁକୁର ଗୋଡ଼େଇଲା ଖାଇବାକୁ । ପ୍ରାଣ ବିକଳରେ ସଙ୍ଗା ଉପରେ ଚଢ଼ିଗଲା । ତା'ପରେ କୁକୁରକୁ ଭଇ ଭାବରେ ଅନେଇ ଦେଖିଲା । ଭାବିଲା ମୁଁ କୁକୁର ଜନ୍ମ ପାଇଲେ ଆଉ କାହାକୁ ଡରନ୍ତି ନାହିଁ । କୁକୁର ବିଷୟ ଭାବି ଭାବି ତା'ର ପ୍ରାଣ ଗଲା । ପର ଜନ୍ମ ହେଲା କୁକୁର । କୁକୁର ଜଣେ ବାବୁଙ୍କ ଘରେ ଥାଏ । ବାବୁ ଜଣେ ଶୀକାରୀ । ଶୀକାରରେ ବାବୁଙ୍କ ସାଙ୍ଗରେ ଯାଇଥାଏ । ସେଠି ତାକୁ ବାଘ ଧରିଲା । ବାଘ ରୂପ ଦେଖି ମଲା । ତା'ର ପରଜନ୍ମ ହେଲା ବାଘ । ଜଙ୍ଗଲରେ ବୁଲୁ ଥାଏ । ତା' ସାଙ୍ଗରେ ଗୋଟିଏ ବାଘୁଣୀ ଥାଏ । ଜଣେ ଶିକାରୀ ଦିନେ ବାଘୁଣୀକୁ ଗୁଳିକରି ମାରିଦେଲେ । ବାଘ ଦେଖିଲା ତା ଅପେକ୍ଷା ବଳବାନ୍ ଜୀବ ମଣିଷ । ମଣିଷ ଜନ୍ମ ପାଇବା ପାଇଁ ଭାବି ଭାବି ତାର ମୃତ୍ୟୁ ହେଲା । ପରଜନ୍ମ ହେଲା ମଣିଷ ।

*ବାଯାବାଣୀ....*

# ହଂସ ଗୀତା

*(ଶାନ୍ତି ପର୍ବର ୨୯୯ ଅଧ୍ୟାୟରେ ହଂସଗୀତା ଅଛି ଏଥିରେ ବ୍ରହ୍ମା ହଂସ ରୂପଧରି ସାଧ୍ୟଗଣଙ୍କୁ ଉପଦେଶ ଦେଇ ଅଛନ୍ତି । ଦ୍ୱାଦଶଗଣ ଦେବତାମାନଙ୍କ ମଧ୍ୟରେ ସାଧ୍ୟ ଅନ୍ୟତମ)*

ଯୁଧିଷ୍ଠିରଙ୍କର ପ୍ରଶ୍ନରେ ପିତାମହ ଭୀଷ୍ମ, ବ୍ରହ୍ମା ସାଧ୍ୟଗଣଙ୍କୁ ଦେବା ଉପଦେଶ ବର୍ଣ୍ଣନା କରିଅଛନ୍ତି ।

ଯୁଧିଷ୍ଠିର ବୋଇଲେ ସତ୍ୟ, ଦମ, କ୍ଷମା     ଶ୍ରଦ୍ଧା କୁ ଦିଅନ୍ତି ଧରମେ ଉପମା,
ତୁମ୍ଭର ଏହି ମତ ହୋଇ କି ନୁହଇ     ପଚାରୁଅଛି ମୋତେ କହ ତ ଫିଟାଇ ।

ହେ ପିତାମହ ସଂସାରରେ ବହୁତ ବିଦ୍ୱାନ ବ୍ୟକ୍ତି ସତ୍ୟ, ଇନ୍ଦ୍ରିୟ ସଂଯମ, କ୍ଷମା ଓ ଶ୍ରଦ୍ଧା (ପ୍ରଜ୍ଞା ଉତ୍ତମ ବୁଦ୍ଧି)କୁ ଶ୍ରେଷ୍ଠତ୍ୱ ଦେଇ ପ୍ରଶଂସା କରିଥାଆନ୍ତି, ଏ ବିଷୟରେ ଆପଣଙ୍କର ମତାମତ ମତେ କହନ୍ତୁ ।

ଭୀଷ୍ମ ବୋଇଲେ ଆହେ ସାଧୁ ହଂସଙ୍କର     ସମ୍ବାଦକୁ କହିବା ରାଜା ହୁଅ ଧୀର
ବ୍ରହ୍ମା ପୂର୍ବରେ ସୁନାହଂସଟିଏ ହେଲେ     ତିନି ଲୋକ ବୁଲି ସାଧ୍ୟଙ୍କଠାକୁ ଗଲେ ।

ସାଧ୍ୟ ବ୍ରହ୍ମା ବୋଲିଣ ହୃଦୟରେ ଲକ୍ଷି     ବୋଇଲେ ମୋକ୍ଷ ଧର୍ମ କହ ତ ହେ ପକ୍ଷୀ
ହଂସ ବୋଇଲେ ଆହେ ତପ, ଦମ, ସତ୍ୟ     ଆଚରିଥିବା ଲୋକ ହୁଅଇ ମୁକତ ।

ମର୍ମପୀଡା କଥାକୁ କାହାକୁ ନ ବୋଲିବ     ହୀନ ଲୋକଠାରୁ ପଦାର୍ଥ ନ ଆଣିବ

(କୌଣସି ନୀଚ ମନୁଷ୍ୟଠାରୁ ଆଧ୍ୟାତ୍ମ ଶାସ୍ତ୍ରର ଉପଦେଶ ଗ୍ରହଣ କରିବ ନାହିଁ)

ବଚନ ଶାୟକଙ୍କୁ (ବାଣ) ଜଗିଥିବ ନିତି     କ୍ରୋଧ ହେଲେ ତହିଁ ନ ବଳାଇବ ମତି
କ୍ରୋଧ କରାଇଲେ ଯେ ହସି ତୁନି ହୁଏ     ପରସୁକୃତକୁ ସେ ବଳେ ଘେନିଯାଏ ।

ସତ୍ୟ ଆରଜବ ଯେ କ୍ଷମା ଅନୃଶଂସ୍ୟ     ବତ କରିଣ ଘେନିଥାଏ ମୋ ମାନସ
ବେଦ, ସତ୍ୟ, ସତ୍ୟଦମ ଦମଟି ମୋକ୍ଷ     ସାରବୋଲି ସଂସାରେ କରୁଥାନ୍ତି ଲକ୍ଷ୍ୟ ।

ବେଦ ଅଧ୍ୟୟନର ସାର ହେଲା ସତ୍ୟ ଭାଷଣ । ସତ୍ୟଭାଷଣର ସାର ଇନ୍ଦ୍ରିୟସଂଯମ । ଇନ୍ଦ୍ରିୟ ସଂଯମର ଫଳ ହେଲା ମୋକ୍ଷ । ସମ୍ପୂର୍ଣ୍ଣ ଶାସ୍ତ୍ରର ଏହା ହିଁ ଉପଦେଶ ।

ବଚନ, ମନ, ଜିହ୍ୱା, ଉଦର, ଉପସ୍ଥ     ଉଦବେଗ ଯେ ସହେ ସେ ଯାଏ ବ୍ରହ୍ମପଥ
କ୍ରୋଧ ହେବା ପ୍ରତିକି ଅକ୍ରୋଧନ ଲୋକ     ସକଳ ପ୍ରକାରେସେ ଅଟଇ ଅଧିକ ।

ଯେଉଁ ମନୁଷ୍ୟ ବାଣୀର ବେଗ, ମନ ଓ କ୍ରୋଧର ବେଗ, ତୃଷ୍ଣାର ବେଗ ତଥା ପେଟ ଓ ଜନନେନ୍ଦ୍ରିୟ ବେଗ ସହିନିଏ ତାକୁ ବ୍ରହ୍ମବେତ୍ତା ଓ ମୁନି ବୋଲି କୁହାଯାଏ । କ୍ରୋଧୀ ମନୁଷ୍ୟ ପ୍ରତି କ୍ରୋଧ ନ କରିବା ବ୍ୟକ୍ତି ଶ୍ରେଷ୍ଠ ଅଟେ । ଗାଳି ଶୁଣି ତାହା ସହି ଯେଉଁ ମଣିଷ ଗାଳି ଦେଇ ନଥାଏ ସେହି କ୍ଷମାଶୀଳ ମନୁଷ୍ୟର ଆୟର କ୍ରୋଧ ଗାଳିଦେବା ମନୁଷ୍ୟର ସମସ୍ତ ପୁଣ୍ୟ ହରଣ କରି ତାକୁ ଭସ୍ମକରିଦିଏ ।

ଅକ୍ଷମାବନ୍ତ ଲୋକ ପ୍ରତି କ୍ଷମାବନ୍ତ ଲୋକର ଧରମଟା ଅଟେ ପରବତ
ପଶୁ ମନୁଷ୍ୟର ଯେ ଶତ କୋଶ ଯାଏ ଅନ୍ତର ଅଛି ବୋଲି କହନ୍ତି ସଭିଏ ।

ଅଜ୍ଞକୁ ପ୍ରତି ଜ୍ଞାନବନ୍ତ ଅଟେ ସାର ମନେ ତାକୁ ଆଦର କରିଥାନ୍ତି ସୁର
ଗାଳି ଦେଲେ ମାଇଲେ ବାନ୍ଧିଲେ ଯେ ପାପ ନ ଇଛଇ ଜାଣ ସେ ଅଟଇ ନିଷ୍ପାପ ।

ଏହା ଜାଣି କାର୍ଯ୍ୟମାନଙ୍କୁ ମୁଁ ଉପାସନା ସବୁକାଳେ କରି ରହିଛି ମୁହିଁ ସିନା

ଯଦ୍ୟପି ମୁଁ ସବୁପ୍ରକାର ପରିପୂର୍ଣ୍ଣ ମୋର କୌଣସି ପ୍ରାପ୍ୟ ବସ୍ତୁ ଆଉ ନାହିଁ ତଥାପି ମୁଁ ଶ୍ରେଷ୍ଠ ପୁରୁଷଙ୍କୁ ଉପାସନା କରିଥାଏ ।

ସଂଯତ ହୋଇବାର ମୋକ୍ଷର ଦୁଆର ବୋଲି ମୋର ମନେ କରିଛି ନିରନ୍ତର
ମନୁଷ୍ୟଠାରୁ ବଡ ହୋଇ କରି କଥା ଥିଲା ପରି ହେ ଲେଖିନାହିଁ ଜାଣ ପୋଥା

ପାପରୁ ମୁକ୍ତ ହୋଇ କାଳରେ ଟି ନର ବ୍ରହ୍ମକୁ ପାଉଛନ୍ତି ସାଧ ମନେ କର
ବଚନ, ମନ ଯା ସଂଯତ ହୋଇଥାଏ ଅଲଭ୍ୟରେ ସମସ୍ତ ଫଳକୁ ସେ ପାଏ ।

ନ ଜାଣିବା ଲୋକେ ନ ଦେବ ମୁଖେ ଗାଳି ଯେବେ ଗାଳି ଦେବ କସିବ କ୍ଷଣେ ଭାଳି
ଅପମାନ ପାଇଲେ ସୁଧା ପାନ ପରି ପଣ୍ଡିତ ଯେ ହୋଇବ ରହିବ ବିଚାରି ।

ଲୋକଙ୍କୁ ଯେ ଅବଜ୍ଞା କରଇ ତା ନାଶ ଏ ଜଗତ ମଧ୍ୟରେ ହୁଅଇ ପ୍ରକାଶ
କ୍ରୋଧ ହୋଇ ଧରମ କଥା ଯେ କରଇ ଅଧରମରେ ଜାଣ ଲେଖା ସେ ହୁଅଇ ।

ଲୁଗାକୁ ଯେ ରଙ୍ଗେ ରଙ୍ଗିବ ସେ ରଙ୍ଗ ହେଲା ପରି ହୁଅଇ ଲୋକରଟି ସଙ୍ଗ
ସବୁ କାଳରେ ଦେବେ ସାଧୁସଙ୍ଗ ଇଚ୍ଛା କରନ୍ତିନି ଜାଣ ଏ କଥା ଚୋଟି କଚ୍ଛା ।

ନ କହିବ କହିଲେ ଧରମ ବଚନ ଯେ କହଇ ତାକୁ ବୋଲନ୍ତି ଧନ୍ୟ ଜନ ।

ମନୁଷ୍ୟ ଜନ୍ମକୁ ବଳିକରି ଅନ୍ୟ କୌଣସି ଜନ୍ମ ନାହିଁ । ଇର୍ଷା ପରାୟଣ ବ୍ୟକ୍ତି ଅନ୍ୟର ଦୋଷ ଦେଖାନ୍ତି ମାତ୍ର, ଗୁଣମାନ ପାଶୋରି ଦିଅନ୍ତି । ଯାହାର ବାଣୀ ଓ ମନ ସୁରକ୍ଷିତ ଓ ମନ

ପରମାତ୍ମାଙ୍କଠାରେ ଲୀନ ଥାଏ ସେ ବେଦାଧ୍ୟୟନ ତପ ଓ ତ୍ୟାଗ ଏ ସବୁର ଫଳ ବିନା ଆଚରଣରେ ପାଇଥାଏ । ବିଦ୍ୱାନ ଅପମାନ ପାଇ ଗାଳିକୁ ଅମୃତ ମନେକରେ ଓ ସେଥିରେ ସନ୍ତୁଷ୍ଟ ହୁଏ । ଆନନ୍ଦରେ ନିଦ୍ରା ଯାଏ । ଅପମାନ ଦେବା ବ୍ୟକ୍ତି କଟୁବଚନ ପ୍ରୟୋଗ କରି ନିଜକୁ ନାଶ କରେ ।

କ୍ରୋଧୀ ମନୁଷ୍ୟ ଯେଉଁ ଯଜ୍ଞକରେ, ଦାନ ଦିଏ, ତପ କରେ, ଯଜ୍ଞ ଆରାଧନା କରେ, ତାହା ଯମରାଜ ହରଣ କରିନିଏ ଓ ତାର ଏ ସବୁ କର୍ମ ନିଷ୍ଫଳ ହୁଏ । ଯେଉଁ ପୁରୁଷ ସତ୍ୟ, ଇନ୍ଦ୍ରିୟସଂଯମ ସରଳତା, ଦୟା, ଧୈର୍ଯ୍ୟ, କ୍ଷମା, ଆଚରଣ କରେ, ଅନ୍ୟର ଦ୍ରବ୍ୟରେ ଲୋଭ ନରଖି ସ୍ୱାଧ୍ୟାୟରେ ଲାଗି ରହେ ଓ ଏକାନ୍ତରେ ବାସ କରେ ସେହି ଏକା ଉର୍ଦ୍ଧ୍ୱଗତିକୁ ପାଇଥାଏ । ବାହୁରୀ ମାଆ ଚିରପାନ କଲାପରି ସବୁ ମନୁଷ୍ୟ ଏହି ସଦ୍‌ଗୁଣମାନଙ୍କୁ ଅର୍ଜନ କରିବା ବାଞ୍ଛନୀୟ । ବିଭିନ୍ନ ବିଷୟର ନଶ୍ୱରତା ଜାଣିବା ମନୁଷ୍ୟର ମର୍ଯ୍ୟଦା, ଚନ୍ଦ୍ରମା ଓ ବାୟୁ ସହିତ ସମାନ । ସତ୍ତ୍ୱଗୁଣ ରହିତ, ଭକ୍ଷାଭକ୍ଷ ବିଚାର ବର୍ଜିତ, ପାପାଚାରୀ ମନୁଷ୍ୟ ଦେବତାମାନଙ୍କୁ ସନ୍ତୁଷ୍ଟ କରି ପାରେନାହିଁ । ମାତ୍ର ନିୟମ ପୂର୍ବକ ସତ୍ୟଭାଷୀ, କୃତଜ୍ଞ ଧର୍ମପରାୟଣ ବ୍ୟକ୍ତି ସହିତ ଦେବତାମାନେ ଆପେ ଆପେ ସ୍ନେହ ସମ୍ବନ୍ଧ ସ୍ଥାପନ କରନ୍ତି । ଉଦରପୋଷକ, ଉପସ୍ଥ ଇନ୍ଦ୍ରିୟଭୋଗୀ, ଚୋରି କରୁଥିବା କଠୋର ବଚନ ପ୍ରୟୋଗ କରୁଥିବା ମନୁଷ୍ୟ ପ୍ରାୟଶ୍ଚିତ କରି କୁତକର୍ମ ଦୋଷରୁ ମୁକ୍ତି ପାଇଲେ ମଧ ଦେବତାମାନେ ତାକୁ ଚିହ୍ନିପାରି ତାଠାରୁ ଦୂରରେ ରହନ୍ତି । ବୃଥା ବାକ୍ୟବ୍ୟୟ ଅପେକ୍ଷା ମୌନ ଶ୍ରେୟସ୍କର । ସତ୍ୟ କହିବା ପ୍ରିୟବାକ୍ୟ କହିବା ଓ ଧର୍ମ ସମ୍ମତ ବାଣୀ କହିବା ବାଣୀର ବିଶେଷ ଗୁଣ । ହଂସକୁ ସାଧ ପୁଣି ପ୍ରଶ୍ନକଲେ -

ସାଧ ବୋଇଲେ ଆହେ କି କଥାରେଲୋକ  ଆବୃତ ହୋଇ ଅଛନ୍ତି ଛାଡିଣ ବିବେକ ।
କେଉଁ କଥା ସବାଙ୍କୁ ନୋହୁଛି ପ୍ରକାଶ  କେଉଁ କଥା ସବାଙ୍କୁ ଛାଡେ ମିତ୍ର ପାଶ ।
କେଉଁ କଥା କରିଣ ସ୍ୱର୍ଗକୁ ନ ଯାଏ,  ଏହା କସି କିହବା ହେଉ ହଂସରାଏ ।

ସାଧ ପଚାରିଲେ କଣ ଏ ଜଗତକୁ ଆବୃତ କରିରଖିଛି କେଉଁ କାରଣରୁ ଏହାର ସ୍ୱରୂପ ପ୍ରକାଶିତ ହେଉ ନାହିଁ, କେଉଁ କାରଣରୁ ମନୁଷ୍ୟ ମିତ୍ରକୁ ମଧ ତ୍ୟାଗ କରେ ଓ କି ଦୋଷ ଥିଲେ ସେ ସ୍ୱର୍ଗକୁ ଯାଇ ପାରେ ନାହିଁ ।

ହଂସ ବୋଇଲେ ଆହେ ଅଜ୍ଞାନେ ଆବୃତ  ହେଉଅଛଇ ଜାଣ ଏ ମଧ ଜଗତ ।
ମାତ୍ସର୍ଯ୍ୟ ସବାଶରୁ ନୋହୁଛି ପ୍ରକାଶ  ମିତ୍ରକୁ ଛାଡୁଅଛି ପାଇ ଲୋଭପାଶ ।
ଦୁଃସଙ୍ଗ ସବାଶରୁ ନୋହୁଅଛି ସ୍ୱର୍ଗ  ଅନ୍ତଃକାଳେ ଭୋଗ କରଇ ଦୁଃଖ ଭାଗ ।

ହଂସ ରୂପୀ ବ୍ରହ୍ମା ଉତ୍ତର ଦେଲେ : - ଅଜ୍ଞାନ ଏହି ଲୋକଙ୍କୁ ଆବୃତ କରି ରଖିଅଛି । ମାତ୍ସର୍ଯ୍ୟ ହେତୁରୁ ଏହାର ସ୍ୱରୂପ ପ୍ରକାଶ ପାଇ ପାରୁନାହିଁ । ଲୋଭ ଫଳରେ ମନୁଷ୍ୟ ମିତ୍ରକୁ ତ୍ୟାଗ କରେ ଓ ଆସକ୍ତି ଦୋଷଯୋଗୁ ସେ ସ୍ୱର୍ଗକୁ ଯାଇ ପାରେନାହିଁ ।

ସାଧ ବୋଇଲେ ଆହେ ବ୍ରାହ୍ମଣରେ ଏକା — ହୋଇ କେ ସୁଖ ପାଉଅଛି ଛାଡି ଦକା
ଏକା ହୋଇ ବା ଯୋଗ କରୁଅଛି କିଏ — ଦୁର୍ବଳ ହୋଇ ବଳିଷ୍ଠାର କେ ବୋଲାଏ
କିଏ ସେ କଳହର କଥା ନ ଜାଣଇ — ଏହା ମଧ କହିବା ହୋଇବା ବତାଇ ।

ବ୍ରାହ୍ମଣ ମଧରେ କିଏ ଏକମାତ୍ର ସୁଖର ଅନୁଭବ କରେ । ଏମିତି କେଉଁ ମନୁଷ୍ୟ ଅଛି ଯେ ବହୁତଙ୍କ ମଧରେ ଥାଇ ମଧ ଚୁପ ରହିଛି । ଏମିତି କେଉଁ ମଣିଷ ଅଛି ଯେ ଦୁର୍ବଳ ହୋଇ ମଧ ବଳବାନ୍ । ଏମିତି କିଏ ଅଛି ଯେ କାହା ସଙ୍ଗରେ କଳହ କରି ନଥାଏ ।

ହଂସ ବୋଇଲେ ଜାଣ ଜ୍ଞାନୀରେ ଏ ମନ — ସବୁ ସମ୍ଭବ ଅଛି ସାଧ ମନେଜାଣ

ହଂସ ଉତ୍ତରରେ କହିଥିଲେ ବ୍ରାହ୍ମଣମାନଙ୍କ ମଧରେ ଏକା ଜ୍ଞାନୀ ପରମ ସୁଖ ଅନୁଭବ କରେ । ସେହି ଜ୍ଞାନୀ ଏକା ବହୁ ମଧରେ ରହି ମୌନ ଓ ଦୁର୍ବଳ ହେଲେ ମଧ ବଳବାନ । ସେହି ଜ୍ଞାନୀ କେବଳ କାହା ସହିତ କଳହ କରିନଥାଏ ।

ସାଧ ବୋଇଲେ ଆହେ କେଉଁ କର୍ମ ବଳେ — ସାଧୁତ୍ବକୁ ବ୍ରାହ୍ମଣ ପାଆନ୍ତିଟି ଭଲେ
ଅସାଧୁତ୍ୱ ମନୁଷ୍ୟ କାହାକୁ କହନ୍ତି — ଏହା ମଧ କହିବା ହେଉ ହଂସଯତି
ହଂସ ବୋଇଲେ ଆହେ ଦ୍ୱିଜର ଦେବତ୍ୱ — ବ୍ରତ କରିବାରେ ଯେ ବୋଲାଏ ସାଧୁତ୍ୱ
ଅପବାଦ ଦେବାର ଅସାଧୁତ୍ୱେ ଯାଏ — ମୃତ୍ୟୁରୁଟି ବ୍ରାହ୍ମଣ ମନୁଷ୍ୟ ବୋଲାଏ ।
ସାଧ ହଂସଙ୍କର ତ ଶୁଣିଲ ସମ୍ବାଦ — ଆଉ କି ଇଚ୍ଛାଅଛି ନୃପମୋତେ କଦ ।

ସାଧଙ୍କର ପ୍ରଶ୍ନ ହେଲା ବ୍ରାହ୍ମଣର ଦେବତ୍ୱ କଣ ? ଏଥିରେ ସାଧୁତାର ଭାଗ କଣ , ବ୍ରାହ୍ମଣ ଭିତରେ ଅସାଧୁତା ଓ ମନୁଷ୍ୟତା କଣ ? ଉତ୍ତରରେ ହଂସଯତି କହିଲେ ବେଦଶାସ୍ତ୍ରର ସ୍ୱାଧ୍ୟାୟ କେବଳ ବ୍ରାହ୍ମଣକୁ ଦେବତ୍ୱ ପ୍ରଦାନ କରିଥାଏ । ଉତ୍ତମ ବ୍ରତ ପାଳନ କରିବା ବ୍ରାହ୍ମଣର ସାଧୁତା । ପରନିନ୍ଦା ବ୍ରାହ୍ମଣର ଅସାଧୁତା ଅଟେ । ମୃତ୍ୟୁ ପ୍ରାପ୍ତ ହେବା ତାହାର ମନୁଷ୍ୟତାର ପ୍ରମାଣ । ଭୀଷ୍ମ କହିଲେ ଏତିକି କହି ନିତ୍ୟ ଅବିନାଶୀ ପରମଦେବ ବ୍ରହ୍ମା ସାଧ ଦେବତାମାନଙ୍କ ସଙ୍ଗରେ ସ୍ୱର୍ଗଲୋକକୁ ଗମନ କଲେ । ଏହି ପୁଣ୍ୟମୟ ସଦ୍‌ଜ୍ଞାନ ଯଶ ଓ ଆୟୁବୃଦ୍ଧି କାରକ । ଏହା ସ୍ୱର୍ଗଲୋକ ପ୍ରାପ୍ତିରେ ନିଶ୍ଚିତ ସାଧନ । ହେ ରାଜା ଯୁଧିଷ୍ଠିର ଏହି ଶରୀର କର୍ମର ଯୋନି ଅଟେ ଓ ସଦ୍‌ଭାବ ହିଁ ସତ୍ୟ ଅଟେ ।

*(ହଂସ ଗୀତା ସହିତ ଶାନ୍ତି ପର୍ବର ଭଗବଦ ଗୀତା ମିଶାଇ ମୋଟ ୧୪ଟି ଗୀତା ଆଲୋଚନା ସରିଲା)*



# ଅଶ୍ୱମେଧ ପର୍ବ

ମହାରାଜ ଯୁଧିଷ୍ଠିର ପିତାମହ ଭୀଷ୍ମଙ୍କର ଉଦ୍ଦେଶ୍ୟରେ ତର୍ପଣ କଲେ । ତାପରେ ଧୃତରାଷ୍ଟ୍ରଙ୍କୁ ଆଗରେ ରଖି ଗଙ୍ଗା ତୀରକୁ ଗଲେ । ସେଠାରେ ସେ ବ୍ୟାକୁଳ ହୋଇ ଅଶ୍ରୁପୂର୍ଣ୍ଣ ନୟନରେ ଭୂମିରେ ପଡ଼ିଗଲେ, ଭୀମ ତାଙ୍କୁ ଟେକି ଧରିଲେ । ଶ୍ରୀକୃଷ୍ଣ କହିଲେ ମହାରାଜ ଆପଣ ଏପରି ଅଧୀର ହେବା ଉଚିତ ନୁହେଁ । ଧୃତରାଷ୍ଟ୍ର ତାଙ୍କୁ ସାନ୍ତ୍ୱନା ଦେଇ କହିଲେ 'ହେ ପୁରୁଷଶ୍ରେଷ୍ଠ, ଉଠ, ତୁମର କର୍ତ୍ତବ୍ୟପାଳନ କର । ତୁମେ କ୍ଷତ୍ରିୟ ଧର୍ମ ଅନୁସାରେ ପୃଥିବୀ ଜୟ କରିଅଛ । ବର୍ତ୍ତମାନ ଭାଇ ଓ ବନ୍ଧୁମାନଙ୍କ ସହିତ ପୃଥିବୀ ଭୋଗ କର । ଶୋକ କରିବାର କାରଣ ଗାନ୍ଧାରୀଙ୍କର ଓ ମୋର ଅଛି । ତମର ଶୋକର କୌଣସି କାରଣ ନାହିଁ । ସ୍ୱପ୍ନଲବ୍ଧ ଧନ ପରି ଶତପୁତ୍ର ମୋର ବିନଷ୍ଟ ହେଲେ । ଆଗରୁ ଦିବ୍ୟଦର୍ଶୀ ବିଦୁର ମୋତେ କହିଥିଲେ 'ମହାରାଜ ଦୁର୍ଯ୍ୟୋଧନର ଅପରାଧରୁ ଆପଣଙ୍କର କୁଳକ୍ଷୟ ହେବ । ତାକୁ ପରିତ୍ୟାଗ କରନ୍ତୁ । କର୍ଣ୍ଣ ଓ ଶକୁନିଙ୍କ ସାଙ୍ଗରେ ତାର ମିଳାମିଶା ବନ୍ଦ କରନ୍ତୁ । ଧର୍ମାତ୍ମା ଯୁଧିଷ୍ଠିରଙ୍କୁ ରାଜ୍ୟରେ ଅଭିଷିକ୍ତ କରାନ୍ତୁ । ତମର ଯଦି ତାହା ଇଚ୍ଛା ନ ହେଉଛି ବରଂ ସ୍ୱୟଂ ରାଜ୍ୟଭାର ଗ୍ରହଣ କରନ୍ତୁ' । ଦୀର୍ଘଦର୍ଶୀ ମହାତ୍ମା ବିଦୁରଙ୍କର ଉପଦେଶ ନ ଶୁଣି ମୁଁ ଆଜି ଶୋକସାଗରରେ ଭାସୁଅଛି । ଏବେ ଆମ୍ଭେ ଦୁହେଁ ଦୁଃଖାର୍ତ୍ତ ଥିବା ବେଳେ ତୁମେ ଆମପ୍ରତି ଦୃଷ୍ଟି ଦିଅ । ଯୁଧିଷ୍ଠିରଙ୍କୁ ନୀରବ ଦେଖି କୃଷ୍ଣ କହିଲେ ମହାରାଜ ଅତ୍ୟନ୍ତ ଶୋକ କଲେ ପରଲୋକଗତ ଆତ୍ମୀୟମାନେ ସନ୍ତାପିତ ହେବେ । ଆପଣ ପ୍ରକୃତିସ୍ଥ ହୋଇ ବିବିଧ ପ୍ରକାରର ଯଜ୍ଞ କରନ୍ତୁ । ଦେବତା ଓ ପିତୃଗଣଙ୍କୁ ତୃପ୍ତ କରନ୍ତୁ । ଅନ୍ନ ଆଦି ଦାନ ଫଳରେ ଅତିଥି ଓ ଦରିଦ୍ରମାନଙ୍କୁ ସନ୍ତୁଷ୍ଟ କରନ୍ତୁ । ଯେଉଁମାନେ ଯୁଦ୍ଧରେ ମରିଛନ୍ତି ସେମାନେ ଆଉ ଫେରି ଆସିବେ ନାହିଁ । ତେଣୁ ଶୋକ କରି ଲାଭ ନାହିଁ । ଯୁଧିଷ୍ଠିର ପ୍ରକୃତିସ୍ଥ ହୋଇ କହିଲେ ଗୋବିନ୍ଦ, ମୋଠାରେ ତୁମର ପ୍ରୀତି ଓ ଅନୁକମ୍ପା ମତେ ଜଣା, ସେହି ଦୃଷ୍ଟିରୁ ସନ୍ତୁଷ୍ଟ ଚିତ୍ତରେ ମୋତେ ବନଗମନ ନିମିତ୍ତ ଅନୁମତି ଦିଅ । ପିତାମହ ଭୀଷ୍ମ ଓ ପୁରୁଷଶ୍ରେଷ୍ଠ କର୍ଣ୍ଣଙ୍କର ମୃତ୍ୟୁ ପାଇଁ ମୁଁ ନିଜକୁ ଦାୟୀକରି ମନରେ ଶାନ୍ତି ପାଇପାରୁନାହିଁ । ବ୍ୟାସଦେବ କହିଲେ 'ବତ୍ସ, ତୁମର ବୁଦ୍ଧି ପରିପକ୍ୱ ନୁହେଁ । ସେଇଥିପାଇଁ ତୁମ୍ଭେ ବାଳକ ପରି ମୋହଗ୍ରସ୍ତ ହେଉଛ । ଆମେ ବାରଂବାର ତୁମ୍ଭଙ୍କୁ ପ୍ରବୋଧ ଦେବା ବୃଥା ହେଉଛି । ତୁମ୍ଭେ କ୍ଷତ୍ରିୟର ଧର୍ମ, ଜ୍ଞାନ, ମୋକ୍ଷ ଧର୍ମ, ରାଜ ଧର୍ମ, ଦାନ ଧର୍ମ ଓ ପ୍ରାୟଶ୍ଚିତ ସମ୍ବନ୍ଧରେ ଉପଦେଶ ସବିସ୍ତାରରେ ଶୁଣିଲ । ତଥାପି ତୁମ୍ଭର ସନ୍ଦେହ ଦୂର ହେଲା ନାହିଁ । ଆମ୍ଭମାନଙ୍କର ଉପଦେଶରେତୁମ୍ଭର ଶ୍ରଦ୍ଧା ନଥିବା ଏଥିରୁ ଜଣାଯାଉଛି । ତୁମ୍ଭର ସ୍ମରଣଶକ୍ତି ମଧ ନାହିଁ । ସର୍ବ ଧର୍ମର ତତ୍ତ୍ୱଜାଣିବା ପରେ ତୁମ୍ଭେ କାହିଁକି ଅଜ୍ଞାନୀ ପରି ମୋହଗ୍ରସ୍ତ ହେଉଛ । ଯଦି ତୁମ୍ଭେ ନିଜକୁ ପାପୀ ମନେ କରୁଅଛ ତାହାହେଲେ ମୁଁ ପାପନାଶର ଉପାୟ ତୁମ୍ଭଙ୍କୁ ବତାଇ ଦେଉଛି । ତପସ୍ୟା

ଯଜ୍ଞ ଓ ଦାନକଲେ ପାପରୁ ମୁକ୍ତି ମିଳେ । ଅତଏବ ତୁମ୍ଭେ ଦଶରଥପୁତ୍ର ରାମ ଓ ତୁମ୍ଭର ପୂର୍ବଜ ପୁରୁଷ ଦୁଷ୍ମନ୍ତ-ଶକୁନ୍ତଳା ପୁତ୍ର ଭରତଙ୍କର ପରି ଅଶ୍ୱମେଧ ଯଜ୍ଞକରି ପ୍ରଚୁର ଦାନ କର । ଯୁଧିଷ୍ଠିର ନିଜର ରାଜକୋଷ ଶୂନ୍ୟ, ଅନ୍ୟ ଜୀବିତ ରାଜାମାନେ ଅଳ୍ପବୟସ୍କ ଓ ନିର୍ଦ୍ଧନ ଥିବା ଜଣାଇ ନିଜର ଅସାମର୍ଥ୍ୟ ପ୍ରକାଶ କରିବାରୁ ବ୍ୟାସଦେବ କହିଲେ କୁନ୍ତୀପୁତ୍ର, ତୁମ୍ଭର ଶୂନ୍ୟ ରାଜକୋଷ ପୂର୍ଣ୍ଣ ହେବାର ଉପାୟ ଶୁଣ । ମରୁତ ରାଜା ତାଙ୍କର ଯଜ୍ଞରେ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ଯେଉଁ ବିପୁଳ ଧନ ଉତ୍ସର୍ଗ କରିଥିଲେ ତାହା ହିମାଳୟ ପର୍ବତରେଅଛି । ସେହି ଧନ ତୁମ୍ଭେ ସଂଗ୍ରହ କର । ଯୁଧିଷ୍ଠିର ପ୍ରଶ୍ନ କଲାରୁ ସେ ମରୁତ ରାଜାଙ୍କ ଯଜ୍ଞ ବିଷୟ ଶୁଣାଇଲେ । ସେ ଏତେ ସୁବର୍ଣ୍ଣ ଦାନ କରିଥିଲେ ଯେ ବ୍ରାହ୍ମଣମାନେ ସେ ସବୁ ନେଇ ନ ପାରି ହିମାଳୟରେ ଛାଡି ଦେଇ ଗଲେ । ବ୍ୟାସଦେବଙ୍କର, 'ମରୁତଙ୍କ ସଞ୍ଚିତ ସୁବର୍ଣ୍ଣ ରାଶି ଆଣ ଓ ଅଶ୍ୱମେଧ ଯଜ୍ଞ କର, ଦେବଗଣଙ୍କୁ ତୃପ୍ତ କର' ଏହି ଉପଦେଶ ଶୁଣି କୃଷ୍ଣ ଯୁଧିଷ୍ଠିରଙ୍କୁ କହିଲେ 'ମହାରାଜ, ମୋର ଉପଦେଶ ଶୁଣ :-

ସବୁ ପ୍ରକାର କୁଟିଳତା ମୃତ୍ୟୁର ଜନକ ଓ ସରଳତା ବ୍ରହ୍ମଲାଭର ପଥ । ଜ୍ଞାନ କେବଳ ଏତିକି । ଅନ୍ୟସବୁ ଆଲୋଚନା ପ୍ରଳାପ ପରି । ଆପଣଙ୍କର ସବୁକାର୍ଯ୍ୟ ଶେଷ ହୋଇନାହିଁ । ଆପଣ ସବୁ ଶତ୍ରୁମାନଙ୍କୁ ଜୟ କରି ପାରିନାହାନ୍ତି । କାରଣ ନିଜ ଅଭ୍ୟନ୍ତରରେ ଥିବା ଅହଂ ବୁଦ୍ଧି ରୂପୀ ଶତ୍ରୁକୁ ଆପଣ ଜାଣି ପାରିନାହାନ୍ତି । ବୋଧହୁଏ ସୁଖ ଦୁଃଖ ଦ୍ୱାରା ଆକୃଷ୍ଟ ହେବା ଆପଣଙ୍କର ସ୍ୱଭାବ । ଆପଣ ଅତୀତରେ ଯେଉଁ ସବୁ କଷ୍ଟ ପାଇଛନ୍ତି ତାକୁ ସ୍ମରଣ ନ କରି ନିଜ ମନ ସାଙ୍ଗରେ ଯୁଦ୍ଧ କରନ୍ତୁ । ଏହି ଯୁଦ୍ଧ ଆପଣ ଏକାକୀ କରିବେ । ଏଥିରେ ବନ୍ଧୁ ବା ଅନୁଚରଙ୍କ ସହାୟତାର ପ୍ରୟୋଜନ ନାହିଁ । ଯଦି ଆପଣ ନିଜର ମନକୁ ଜୟ କରି ନ ପାରନ୍ତି ତେବେ ଆପଣଙ୍କର ଅବସ୍ଥା ଆହୁରି ଖରାପ ହେବ । ତେଣୁ ଶୋକ ତ୍ୟାଗକରି ଆପଣ ପିତୃପିତାମହଙ୍କର ଅନୁବର୍ତ୍ତୀ ହୋଇ ରାଜ୍ୟଶାସନ କରନ୍ତୁ । ମୁଁ ଆପଣଙ୍କୁ ପୁରାବିତ ପଣ୍ଡିତମାନଙ୍କର କଥିତ କାମଗୀତା କହୁଛି । ଆପଣ ଶୁଣନ୍ତୁ : (କାମଗୀତା ସ୍ୱତନ୍ତ୍ର ଗୀତା ନୁହେଁ । ଅଶ୍ୱମେଧ ପର୍ବର ୧୩ଶ ଅଧ୍ୟାୟରେ ଯୁଧିଷ୍ଠିରଙ୍କୁ ମମତା ତ୍ୟାଗର ମହତ୍ୱ ସହିତ କାମଗୀତା ଉଲ୍ଲେଖକରି ଶ୍ରୀକୃଷ୍ଣ ଯଜ୍ଞ କରିବାକୁ ପ୍ରେରଣା ଦେଇଛନ୍ତି) ।

କାମ ଗୀତାରେ କୁହାଯାଇଅଛି ଯୋଗୀ ପୁରୁଷ ଅନେକ ଜନ୍ମରେ ଯୋଗ ଅଭ୍ୟାସ କରି ମୋକ୍ଷ ମାର୍ଗ ନିଶ୍ଚିତ କରେ । ଏହାଦ୍ୱାରା କାମନାର ନାଶ କରିଥାଏ । ଯେଉଁ ପୁରୁଷ ଏହା ଜାଣିଅଛି ସେ ଦାନ, ବେଦ ଅଧ୍ୟୟନ, ତପ, ବେଦୋକ୍ତ କର୍ମ, ବ୍ରତ, ଯଜ୍ଞ, ନିୟମ ଏବଂ ଜ୍ଞାନଯୋଗ ଆଦି କାମନା ସହିତ ଅନୁଷ୍ଠାନ କରେ ନାହିଁ । ସେ ଜାଣେ ଯେ ଯେଉଁ କର୍ମରେ ତାହାର କାମନା ରହିଛି ତାହା ଧର୍ମ ନୁହେଁ । ବାସ୍ତବରେ କାମନାର ନିଗ୍ରହ ହିଁ ଧର୍ମ ଓ ଏହା ମୋକ୍ଷର ମୂଳ ।

କାମନା କହିଅଛି ଅନୁପଯୁକ୍ତ ଉପାୟରେ କେହି ମୋତେ ବିନଷ୍ଟ କରି ପାରିବ ନାହିଁ । ଯେଉଁ

ଅସ୍ତ୍ରଦ୍ୱାରା ଲୋକେ ମୋତେ ଜୟ କରିବାକୁ ଚେଷ୍ଟା କରିବେ ମୋର ପ୍ରଭାବରୁ ସେଇ ଅସ୍ତ୍ର ହିଁ ବିଫଳ ହେବ । ଯଜ୍ଞଦ୍ୱାରା ଯେ ମୋତେ ଜୟ କରିବାକୁ ଚେଷ୍ଟା କରେ ତା ମନରେ ମୁଁ ଜଙ୍ଗମସ୍ଥିତ ବ୍ୟକ୍ତି ଜୀବାତ୍ମା ଭାବରେ ପ୍ରକାଶ ପାଇଥାଏ । ବେଦବେଦାନ୍ତ ସାଧନ କରି ଯେ ମତେ ଜୟ କରିବାକୁ ବସେ ମୁଁ ତା ମନରେ ସ୍ଥାବରସ୍ଥ ଅବ୍ୟକ୍ତ ଜୀବାତ୍ମା ରୂପେ ଅଧିଷ୍ଠାନ କରେ । ଧୈର୍ଯ୍ୟ ଦ୍ୱାରା ଯେ ମୋତେ ପରାସ୍ତ କରିବାକୁ ଚାହେଁ ମୁଁ ଭାବରୂପରେ ତାର ମନରେ ଅଧିଷ୍ଠାନ କରେ । ସେ ମୋର ଅସ୍ତିତ୍ୱ ଜାଣି ପାରେ ନାହିଁ । ଯେ ତପସ୍ୟା କରେ ତା ମନରେ ମୁଁ ତପ ରୂପରେ ରହେ । ଆଉ ଯେ ମୋକ୍ଷମାର୍ଗ ଅବଲମ୍ବନ କରେ ମୁଁ ତା ଉଦ୍ଦେଶ୍ୟରେ ହାସ୍ୟ ଓ ନୃତ୍ୟ କରେ । ମୁଁ ସନାତନ ଓ ସବୁ ପ୍ରାଣୀଙ୍କର ଅବଧ୍ୟ । ଏହାପରେ କୃଷ୍ଣ କହିଲେ ମହାଭାଗ ନିହତ ବନ୍ଧୁଗଣଙ୍କୁ ବାରମ୍ବାର ସ୍ମରଣ କରି ବୃଥାରେ ଆପଣ ଦୁଃଖ ଭୋଗ କରୁଛନ୍ତି । ତେଣୁ ଶୋକ ସମ୍ବରଣକରି କାମନା ତ୍ୟାଗ କରି ଦକ୍ଷିଣାଯୁକ୍ତ ଅଶ୍ୱମେଧ ଯଜ୍ଞ କରନ୍ତୁ । ଫଳରେ ଆପଣ ଇହଲୋକରେ କୀର୍ତ୍ତି ଓ ପରଲୋକରେ ଉତ୍ତମ ଗତି ଲାଭ କରିବେ । କୃଷ୍ଣ, ବାସୁଦେବ, ନାରଦ, ପ୍ରଭୃତିଙ୍କର ଉପଦେଶ ଶୁଣି ଯୁଧିଷ୍ଠିରଙ୍କର ମନ ଶାନ୍ତ ହେଲା ।



*ଏମନ୍ତେ ଯେତେ ଫଳ ସାଧି*
*ସୁଖ ସମ୍ପଦ ନାନାବିଧି*
*ଅନ୍ତେ ସକଳ ହୋନ୍ତି ନାଶ*
*କିଛି ହିଁ ନାହିଁ ସୁଖ ଲେଶ*
*କର୍ମ ସରିଲେ ଫଳ କ୍ଷୟେ*
*ଇବଧି କ୍ଳେଶ ମାତ୍ର ରହେ*
*ଏଣୁ ସଂସାର ଘୋରବନେ*
*ବୃଜିନ ଅନଳ ଦହନେ*
*ପ୍ରାଣୀ ହୁଅନ୍ତି ଆତଯାତ*
*ନଜାଣି ବେଦର ବୃତ୍ତାନ୍ତ*
*ଏ ବୋଲି ବୁଝି ତୁ ନିରତେ*
*କେବଳ ଆଶ୍ରେ କର ମୋତେ*
*ମୁଁ ଆତ୍ମା ପ୍ରିୟସଖା ହୋଇ*
*ସକଳ କର୍ମ ଫଳ ଦେଇ*
*ମୁଁ ଗତି ପତି ହିତକର୍ତ୍ତା*
*ମୁହିଁ ସେ ସର୍ବଲୋକ-ପିତା*
*ମୋତେ ଭଜନ୍ତି ପ୍ରାଣୀ ଯେତେ*
*ସୁଖେ ସେ ତରନ୍ତି ନିଶ୍ଚିନ୍ତେ*
*ଜନ୍ମ ମରଣ ନାହିଁ ଭ୍ରାନ୍ତି*
*ହେଳେ ସଂସାରୁ ତରିଥାନ୍ତି*
*ବିଷୟ ସୁଖେ ଯାର ଚିତ୍ତ*
*ମୋର ଭଜନେ ସେ ବଞ୍ଚିତ*
*ଯେ ପ୍ରାଣୀ ଅକିଞ୍ଚନମତ*
*ସମ ସୁଶାନ୍ତ ଦାନ୍ତଚିତ୍ତ*
*ମୋର ଆନନ୍ଦରସେ ରସେ*
*ସୁଖ ସମୁଦ୍ରେ ନିତ୍ୟେ ଭାସେ*
*ମୁଁ ଯାହାକୁ ହୁଅଇ ସଦୟ*
*ତାହାର କାହିଁ ଦୁଃଖଭୟ*
*ଦେଖଇ ଅନ୍ତର ବାହାରେ*
*ସକଳ ସୁଖ ସବୁଠାରେ ।*

*-ଭାଗବତ ବାଣୀ*

# ଅନୁଗୀତା

ଏକଦା ରମଣୀୟ ସ୍ଥାନରେ ବିଚରଣ କରୁଥିବା ବେଳେ ଅର୍ଜୁନ କୃଷ୍ଣଙ୍କୁ କହିଲେ 'ହେ କେଶବ ! ସଂଗ୍ରାମ ସମୟରେ ମୁଁ ତୁମ୍ଭର ମାହାତ୍ମ୍ୟ ଜାଣିଥିଲି । ତୁମ୍ଭର ଦିବ୍ୟରୂପ ଓ ଐଶ୍ୱର୍ଯ୍ୟ ମଧ ଦେଖିଥିଛି । ସୁହୃଦଭାବରେ ତୁମେ ପୂର୍ବେ ମୋତେ ଯେଉଁ ସବୁ ଉପଦେଶ ଦେଇଥିଲ ବୁଦ୍ଧି ଦୋଷରେ ମୁଁ ବର୍ତ୍ତମାନ ତାହା ଭୁଲି ଯାଇଛି । ତୁମ୍ଭେ ଶୀଘ୍ର ଦ୍ୱାରିକା ଚାଲିଯିବ । ତେଣୁ ମୋର ବର୍ତ୍ତମାନ ସେ ଉପଦେଶ ସବୁ ଆଉଥରେ ଶୁଣିବାକୁ ଇଚ୍ଛା ହେଉଛି ।' ଅର୍ଜୁନଙ୍କୁ ସ୍ନେହରେ ଆଲିଙ୍ଗନ କରି କୃଷ୍ଣ କହିଲେ 'ନିଗୂଢ଼ ସନାତନ ଧର୍ମ ତତ୍ତ୍ୱ ଓ ଶାଶ୍ୱତ ଲୋକ ସମ୍ବନ୍ଧରେ ମୁଁ ତୁମ୍ଭକୁ ଦେଇଥିବା ଉପଦେଶ, ବୁଦ୍ଧିଦୋଷରୁ ତୁମ୍ଭେ ଭୁଲିଯିବା ଜାଣି ମୁଁ ଦୁଃଖିତ । ମାତ୍ର ଯୋଗଯୁକ୍ତ ହୋଇ ସେ ସମୟରେ ମୁଁ ଯେଉଁ ସବୁ ଉପଦେଶ ବ୍ରହ୍ମତତ୍ତ୍ୱ ବ୍ୟାଖାନ କରି କହିଅଛି ତାକୁ ଆଉ ସେମିତି କହି ପାରିବି ନାହିଁ । କିନ୍ତୁ ଏକ ସିଦ୍ଧ ବ୍ରାହ୍ମଣ ଧର୍ମାତ୍ମା କଶ୍ୟପଙ୍କୁ ଯେଉଁ ଉପଦେଶ ଦେଇଥିଲେ ତାହା ତୁମ୍ଭକୁ ଶୁଣାଉଛି ।

ପୂଣ୍ୟ କର୍ମଫଳରେ ମନୁଷ୍ୟ ଉତ୍ତମ ଗତିପାଏ ଏବଂ ଦେବ ଲୋକରେ ସୁଖ ଭୋଗ କରେ । ଏହା କିନ୍ତୁ ଚିରସ୍ଥାୟୀ ନୁହେଁ । ଉତ୍ତମ ଲୋକ ଲାଭ ଅତି କଷ୍ଟକର ହୋଇଥିଲେ ମଧ ବାରମ୍ବାର ସେଥିରୁ ପତନ ହୁଏ । ବିପରୀତ ବୁଦ୍ଧି ଦ୍ୱାରା ପ୍ରଭାବିତ ହୋଇ ଦେହଧାରୀ ଜୀବ ଅସତ କର୍ମରେ ପ୍ରବୃତ୍ତ ହୁଏ । ସେ ଅନାହାରରେ ରହେ ବା ଅତିଭୋଜନ କରେ, ପରସ୍ପର ବିରୋଧୀ ବସ୍ତୁ ଭୋଜନ ବା ପାନ କରେ । ତୃପ୍ତ ଖାଦ୍ୟ ଜୀର୍ଣ୍ଣ ନ ହେଲେ ମଧ ପୁଣି ଭୋଜନ କରେ, ଦିବସରେ ନିଦ୍ରାଯାଏ, ଅତିରିକ୍ତ ପରିଶ୍ରମ ବା ସ୍ତ୍ରୀ ସଂସ୍ପର୍ଶରେ ସେ ଦୁର୍ବଳ ହୁଏ । ଏହି ପ୍ରକାର ବାୟୁପିତ୍ତ ଆଦି ପ୍ରକୋପିତ କରି ସେ ଶେଷରେ ପ୍ରାଣାନ୍ତକ ରୋଗରେ ପଡେ । କେହି କେହି ଉଦ୍‌ବନ୍ଧନାଦି ଦ୍ୱାରା ଆତ୍ମହତ୍ୟା କରିଥାଆନ୍ତି ।

ଦେହ ତ୍ୟାଗ ସମୟରେ ଶରୀରସ୍ଥ ଆତ୍ମା ବାୟୁଦ୍ୱାରା ପ୍ରକୋପିତ ହୋଇ ମର୍ମସ୍ଥାନ ଭେଦ କରେ । ସେତେବେଳେ ବେଦନାଗ୍ରସ୍ତ ହୋଇ ଜୀବାତ୍ମା ଦେହରୁ ବାହାରି ଚାଲିଯାଏ । ସମସ୍ତ ଜୀବ ବାରମ୍ବାର ଜନ୍ମ ମୃତ୍ୟୁ ଭୋଗ କରନ୍ତି । ପ୍ରାଣୀମାନେ ମୃତ୍ୟୁକାଳ ଓ ଜନ୍ମ କାଳରେ କ୍ଳେଶ ପାଇଥାନ୍ତି । ସନାତନ ଜୀବାତ୍ମା, ଦେହରେ ଥାଇ ସବୁ କାର୍ଯ୍ୟ ସମ୍ପାଦନ କରିଥାଏ । ମୃତ୍ୟୁ ପରେ ମଧ ତାର କୃତକର୍ମସବୁ ତାକୁ ପରିତ୍ୟାଗ କରି ନଥାନ୍ତି । ସେହି କର୍ମବନ୍ଧନର ଫଳରେ ସେ ପୁନର୍ବାର ଜନ୍ମ ଲାଭ କରେ । ଚକ୍ଷୁଷ୍ମାନ ଲୋକ ଦେଖେ- ଜୁଳୁଜୁଳିଆ ପୋକ ଅନ୍ଧକାରରେ କେତେବେଳେ ଦେଖାଦିଏ ପୁଣି କେତେବେଳେ ଲୀନ ହୋଇଯାଏ । ସେହିପରି ସିଦ୍ଧ ପୁରୁଷ ଜ୍ଞାନ ଚକ୍ଷୁଦ୍ୱାରା, ଜୀବର ଜନ୍ମ ମରଣ ଓ ପୁନର୍ବାର ଗର୍ଭପ୍ରବେଶ ଦେଖିପାରେ । ସଂସାର ଏକ କର୍ମ ଭୂମି । ଏଠାରେ

ଶୁଭ ଅଶୁଭ କର୍ମ କରି କିଏ ଏହିଠାରେ ଫଳ ଭୋଗ କରେ । କିଏ ପୁଣ୍ୟ ବଳରେ ସ୍ୱର୍ଗକୁ ଯାଏ । କିଏ ଅବା ଅସତ କର୍ମ ଫଳରେ ନରକ ଭୋଗ କରେ । ସେହି ନରକରୁ ମୁକ୍ତି ଲାଭ ବଡ ଦୁରୂହ । ମୃତ୍ୟୁ ପରେ ଜୀବାତ୍ମା ପୁଣ୍ୟଦ୍ୱାରା ଚନ୍ଦ୍ର ସୂର୍ଯ୍ୟ ଅଥବା ନକ୍ଷତ୍ରଲୋକକୁ ଯାଇଥାଏ ମାତ୍ର କର୍ମକ୍ଷୟ ହେଲେ ପୁଣି ସେ ମର୍ତ୍ତ୍ୟଲୋକକୁ ଫେରିଆସିଥାଏ । ଏହିପରି ବାରମ୍ବାର ଯାତାୟତ ଘଟୁଥାଏ । ସ୍ୱର୍ଗରେ ମଧ ଉଚ୍ଚ ମଧ୍ୟମ ଓ ନୀଚ ସ୍ତରର ଆସ୍ଥାନ ଅଛି ।

ଶୁକ୍ର, ଶୋଣିତ ସଂଯୁକ୍ତ ହୋଇ ମାତୃ ଗର୍ଭରେ ପ୍ରବେଶ କରି ଜୀବ କର୍ମ ଅନୁସାରେ ଦେହରେ ପରିଣତ ହୁଏ । ଦେହର ଅଧିଷ୍ଠାତା ଜୀବାତ୍ମା ଅତି ସୂକ୍ଷ୍ମ ଓ ଅଦୃଶ୍ୟ । ସେ କୌଣସି ବିଷୟରେ ଲିପ୍ତ ହୋଇନଥାଏ । ସେ ଶାଶ୍ୱତ ବ୍ରହ୍ମ ଓ ସର୍ବ ପ୍ରାଣୀର ବୀଜ ସ୍ୱରୂପ । ତାହାର ପ୍ରଭାବରୁ ପ୍ରାଣୀମାନେ ଜୀବିତ ରହନ୍ତି । ଅଗ୍ନି ଯେପରି ଅନୁପ୍ରବିଷ୍ଟ ହୋଇ ଲୌହ ପିଣ୍ଡକୁ ତାପିତ କରେ ଜୀବାତ୍ମା ସେହିପରି ଦେହକୁ ସଚେତନ ରଖେ । ଦୀପ ଯେପରି ଗୃହକୁ ଆଲୋକିତ ରଖେ ଚେତନା ଶକ୍ତି ସେହିପରି ଶରୀରକୁ ସମ୍ବେଦନଶୀଳ କରି ରଖେ । ଯେତେଦିନ ଯାଏ ମୋକ୍ଷଧର୍ମର ଉପଲବ୍ଧି ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ଜୀବ ଜନ୍ମଜନ୍ମାନ୍ତରର ଶୁଭାଶୁଭ କର୍ମରେ ପ୍ରବୃତ୍ତ ହୁଏ ଓ ତାହାର ଫଳଭୋଗ କରେ । ଦାନ, ବ୍ରତ, ବ୍ରହ୍ମଚର୍ଯ୍ୟ, ବେଦାଭ୍ୟାସ, ପ୍ରଶାନ୍ତତା, ଅନୁକମ୍ପା, ସଂଯମ, ଅହିଂସା, ପରଧନରେ ଅଲୋଭ, ମନନ, ପ୍ରାଣୀମାନଙ୍କର ଅହିତ ନ କରିବା, ପିତାମାତାଙ୍କର ସେବା, ଗୁରୁଦେବତା ଓ ଅତିଥିର ପୂଜା, ଶୁଚିତା, ଇନ୍ଦ୍ରିୟ ସଂଯମ ଏବଂ ଶୁଭକର୍ମର ଅନୁଷ୍ଠାନ-ଏସବୁ ସାଧୁମାନଙ୍କର ସ୍ୱଭାବସିଦ୍ଧ । ଏହି ପ୍ରକାର ସଦାଚାରଦ୍ୱାରା ଧର୍ମ ବୃଦ୍ଧିପାଏ ଏବଂ ମର୍ତ୍ତ୍ୟବାସୀ ପ୍ରଜା ଚିରକାଳ ପାଳିତ ହୁଏ । ସଦାଚାର ପରାୟଣ ସାଧୁ ଅପେକ୍ଷା ଯୋଗୀ ଶ୍ରେଷ୍ଠ । ସେ ଶୀଘ୍ର ମୁକ୍ତି ଲାଭ କରେ । ସୁଖଦୁଃଖ ଅନିତ୍ୟ । ଶରୀର ଅପବିତ୍ର ବସ୍ତୁର ସମଷ୍ଟି । କର୍ମର ଫଳ ବିନାଶଶୀଳ ଏବଂ ସକଳ ସୁଖ ହିଁ ଦୁଃଖ ମୟ, ମାତ୍ର ଜୀବ ଏହି ଘୋର ସଂସାର ସାଗରରୁ ଉତ୍ତୀର୍ଣ୍ଣ ହୋଇ ପାରେ । ଜନ୍ମ ମରଣଶୀଳ ରୋଗ ସଂକୁଳ ପ୍ରାଣୀ ସମଗ୍ରର ଦେହରେ ଯେ ଏକମାତ୍ର ଚୈତନ୍ୟମୟ ସତ୍ତ୍ୱ ଦେଖେ ସେହି ବ୍ୟକ୍ତି ପରମପଦର ଅନ୍ୱେଷଣ କଲେ ସିଦ୍ଧି ଲାଭ କରେ ।

ଯେଉଁ ବ୍ୟକ୍ତି ସମସ୍ତଙ୍କର ମିତ୍ର, ସବୁ ବିଷୟରେ ସହିଷ୍ଣୁ, ଶାନ୍ତ ଓ ଜିତେନ୍ଦ୍ରିୟ, ଭୟ, କ୍ରୋଧ, ଅଭିମାନ ଶୂନ୍ୟ, ପବିତ୍ର ସ୍ୱଭାବ ଓ ସର୍ବ ଭୂତ ପ୍ରତି ଆତ୍ମବତ ଆଚରଣ କରେ, ଜନ୍ମ ମୃତ୍ୟୁ, ସୁଖ ଦୁଃଖ, ଲାଭ-କ୍ଷତି, ପ୍ରିୟ-ଅପ୍ରିୟ ସବୁ ସମାନ ଜ୍ଞାନ କରେ, ଅନ୍ୟର ଦ୍ରବ୍ୟ ପାଇବାକୁ କାମନା କରେ ନାହିଁ, କାହାକୁ ଅବଜ୍ଞା କରେ ନାହିଁ, ଯାହାର ଶତ୍ରୁମିତ୍ର ନାହିଁ, ସନ୍ତାନରେ ଆସକ୍ତି ନାହିଁ, ଯିଏ ଆକାଙ୍କ୍ଷାଶୂନ୍ୟ ଓ ଧର୍ମ, ଅର୍ଥ, କାମ ପରିହାର କରିଛି, ଯିଏ ଧାର୍ମିକ ନୁହେଁ ବା ଅଧାର୍ମିକ ନୁହେଁ, ଯାହାର ମନ ପ୍ରଶାନ୍ତ, ସେ ହିଁ ଆତ୍ମାକୁ ଉପଲବ୍ଧି କରି ମୁକ୍ତି ପାଇଥାଏ । ଯେଉଁ ବ୍ୟକ୍ତି ବୈରାଗ୍ୟଯୁକ୍ତ, ସର୍ବଦା ଆତ୍ମଦୋଷଦର୍ଶୀ, ଆତ୍ମାକୁ ନିର୍ଗୁଣ ଜାଣି ମଧ ଗୁଣଭୋକ୍ତା ବୋଲି ମନେ

କରେ ଶାରୀରିକ ଓ ମାନସିକ ସମସ୍ତ ସଂକଳ୍ପ ତ୍ୟାଗ କରିଥାଏ ସେହି ବ୍ୟକ୍ତି ଇନ୍ଧନ ନ ପାଇଲେ ଅଗ୍ନି ଲିଭିଲା ପରି ନିର୍ବାଣ ଲାଭ କରେ । ଯେ ସର୍ବ ସଂସାରମୁକ୍ତ, ନିର୍ଦ୍ୱନ୍ଦ ଏବଂ କୌଣସି ଦ୍ରବ୍ୟକୁ ନିଜର ବୋଲି ମନେ କରେ ନାହିଁ ସେହି ବ୍ୟକ୍ତି ସନାତନ ଅକ୍ଷର ବ୍ରହ୍ମ ଲାଭ କରିଥାଏ । ତପସ୍ୟା ଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟଠାରୁ ନିବୃତ୍ତ କରି ଏକାନ୍ତ ମନରେ ଯୋଗରତ ହେଲେ ହୃଦୟ ମଧ୍ୟରେ ପରମାତ୍ମାଙ୍କର ଦର୍ଶନ ମିଳିଥାଏ । ସ୍ୱପ୍ନରେ ଦେଖିବା ବସ୍ତୁର ଜ୍ଞାନ, ଯେପରି ଜାଗରଣ ଅବସ୍ଥାରେ ରହେ, ସେହିପରି ଯୋଗାବସ୍ଥାରେ ପରମାତ୍ମାଙ୍କୁ ପ୍ରତ୍ୟକ୍ଷ କଲେ ଯୋଗଭଙ୍ଗ ପରେ ମଧ ତାଙ୍କର ଉପଲବ୍ଧି ହୋଇଥାଏ । କୃଷ୍ଣ ଏହାପରେ ନାନା ଉପାଖ୍ୟାନ ପ୍ରସଙ୍ଗରେ ଆଧାତ୍ମତତ୍ତ୍ୱ ସବିସ୍ତାରରେ ବର୍ଣ୍ଣନା କଲେ । ଏହା ଅନୁଗୀତା ନାମରେ ଖ୍ୟାତ ।

ଶେଷର ସେ କହିଲେ ଧନଞ୍ଜୟ, ତୁମ ପ୍ରତି ଶ୍ରଦ୍ଧାବତ୍ସଳ ହୋଇ ତୁମ୍ଭକୁ ଏହି ସବୁ ନିଗୂଢ଼ ବସ୍ତୁମାନ କହିଲି । ମୋର ଉପଦେଶ ଅନୁସାରେ ତୁମ୍ଭେ ଧର୍ମ ଆଚରଣ କର । ତା ଫଳରେ ସବୁ ପାପରୁ ମୁକ୍ତ ହୋଇ ମୋକ୍ଷଲାଭ କରିବ । ଏହାପରେ ନିଜ ପିତାମାତାଙ୍କର ଦର୍ଶନ ନିମିତ୍ତ ହସ୍ତିନାପୁରରେ ଯୁଧିଷ୍ଠିରଙ୍କର ଅନୁମତି ନେଇ କୃଷ୍ଣ ଦ୍ୱାରିକା ଲେଉଟିଗଲେ ।

ଅଶ୍ୱମେଧ ପର୍ବର ଷୋଳଠାରୁ ଉଣେଇଶ ଅଧ୍ୟାୟରେ ଅନୁଗୀତା କୁହାଯାଇଅଛି । ଷୋଡ଼ଶ ଅଧ୍ୟାୟରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଗୀତାର ବିଷୟ ପଚାରିଅଛନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସିଦ୍ଧ ମହର୍ଷି ଓ କାଶ୍ୟପଙ୍କର ସମ୍ବାଦ ଶୁଣାଇଅଛନ୍ତି । ୧୭ଶ ଅଧ୍ୟାୟରେ କାଶ୍ୟପଙ୍କ ପ୍ରଶ୍ନର ଉତ୍ତରରେ ସିଦ୍ଧ ମହାତ୍ମାଙ୍କ ଦ୍ୱାରା ଜୀବର ବିଭିନ୍ନ ଗତିର ବର୍ଣ୍ଣନା ହୋଇଅଛି । ୧୮ଶ ଅଧ୍ୟାୟରେ ଜୀବର ଗର୍ଭପ୍ରବେଶ ଆଚାର ଧର୍ମ, କର୍ମଫଳର ଅନିବାର୍ଯ୍ୟତା ଓ ସଂସାରରୁ ମୁକ୍ତି ପାଇବାର ଉପାୟ କୁହାଯାଇଅଛି । ୧୯ଶ ଅଧ୍ୟାୟରେ ଗୁରୁ ଶିଷ୍ୟ ପ୍ରସଙ୍ଗରେ ମୋକ୍ଷ ପ୍ରାପ୍ତିର ଉପାୟ ବର୍ଣ୍ଣନା କରାଯାଇଅଛି । ଏହି ଅଧ୍ୟାୟ ଶେଷରେ ଶ୍ରୀକୃଷ୍ଣ ପାର୍ଥଙ୍କୁ ପାଳକୁ କହିଛନ୍ତି ଯାହା କହିବା ଯୋଗ୍ୟ ତମକୁ ଶୁଣାଇଛି । ଯେଉଁ ବ୍ୟକ୍ତି ଛଅମାସ ନିରନ୍ତର ଯୋଗ ଅଭ୍ୟାସ କରିଥାଏ ତାହାର ଯୋଗ ଅବଶ୍ୟ ସିଦ୍ଧିଲାଭ କରିଥାଏ ।



# ବ୍ରାହ୍ମଣ ଗୀତା

ଲୋକମାନ୍ୟ ତିଳକଙ୍କ ମତରେ ବ୍ରାହ୍ମଣ ଗୀତା ଅନୁଗୀତାର ଏକ ଅଂଶ ମାତ୍ର ଏହାକୁ ଗୀତାର ମାନ୍ୟତା ପ୍ରଦାନ କରାଯାଇଅଛି, ଅଶ୍ୱମେଧ ପର୍ବର ୨୦ଶରୁ ୩୪ଶ ଅଧାୟ ବ୍ରାହ୍ମଣଗୀତା ନାମରେ ବର୍ଣ୍ଣିତ ।

୨୦ଶ ଅଧାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଜଣେ ବ୍ରାହ୍ମଣ ନିଜ ଧର୍ମପତ୍ନୀଙ୍କୁ ଜ୍ଞାନ ଉପଦେଶ ଶୁଣାଇବା ଆରମ୍ଭ କରିଛନ୍ତି । ୨୦ ଅଧାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଜଣେ ବ୍ରାହ୍ମଣ ନିଜ ପିଲାକୁ ଦେବା ଦାନର ଉପଦେଶ ଶୁଣାଇଅଛନ୍ତି । ୨୧ ଅଧାୟରେ ଦଶଜଣ ହୋତାଙ୍କ ଦ୍ୱାରା ସମ୍ପନ୍ନ ଯଜ୍ଞର ବର୍ଣ୍ଣନା କରାଯିବା ସଙ୍ଗେ ମନ ଓ ବାଣୀର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଅଛି । ୨୨ ଅଧାୟରେ ମନ ବୁଦ୍ଧି ଏବଂ ଇନ୍ଦ୍ରିୟ ରୂପୀ ସାତ ହୋତାଙ୍କ ଯଜ୍ଞ ଏବଂ ମନ ଇନ୍ଦ୍ରିୟ ସମ୍ବାଦ ବର୍ଣ୍ଣନା କରାଯାଇଛି । ୨୩ ଅଧାୟରେ ପ୍ରାଣ ଅପାନ ଆଦି ସମ୍ବାଦ ଓ ବ୍ରହ୍ମା ସମସ୍ତଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବା କୁହାଯାଇଛି । ୨୪ ଅଧାୟରେ ଦେବର୍ଷି ନାରଦ ଓ ଦେବ ମତଙ୍କର ଆଲୋଚନା ଏବଂ ଉଦାନ ବାୟୁର ଉତ୍କୃଷ୍ଟ ରୂପର ବର୍ଣ୍ଣନା ଅଛି । ୨୫ ଅଧାୟରେ ଚର୍ତୁହୋମ ଯଜ୍ଞ ବର୍ଣ୍ଣନା ୨୬ ଅଧାୟରେ ଅନ୍ତର୍ଯ୍ୟାମୀଙ୍କର ପ୍ରଧାନତା ୨୭ ଅଧାୟରେ ଆଧାତ୍ମ ବିଷୟକ ମହାବନ ୨୮ ଅଧାୟରେ ଜ୍ଞାନୀ ପୁରୁଷଙ୍କର ସହିତ ଅଧ୍ୱର୍ଯ୍ୟୁ-ଯଦି ସମ୍ବାଦର ସର୍ବଶେଷ ବର୍ଣ୍ଣନା ଅଛି ।

ମୋକ୍ଷ ଶାସ୍ତ୍ର ବିଷୟେ ହୋଇ ପୁରାତନ — କଥା ଅଛି ଶୁଣ ହେ ପାଣ୍ଡବ ଅର୍ଜ୍ଜୁନ
ପୂର୍ବେ ଦ୍ୱିଜ ଜଣେ ଗୃହସ୍ଥାଶ୍ରମେ ଥାଇ — ଯୋଗରେ ବସିଥିଲେ ଚଦ୍ମାସନ ଦେଇ ।

ତାଙ୍କ ନାରୀ ବୋଇଲେ ଛାଡ ମନୁ ଚିନ୍ତା — କିସ ଗତି ହେବ ମୋ କହ ବେଦବନ୍ତା
ସ୍ତ୍ରୀମାନଙ୍କର ତ ପତି ଅଟେ ଗତି — ବୋଲି କରି ଶାସ୍ତ୍ରେ ଋଷିଏ କହିଛନ୍ତି ।

ଏହି କଥାକୁ ଜାଣି ତୁମ୍ଭର ଏକଥା — ଦେଖିକରି ଜାତ ହେଉଛି ମୋର ବ୍ୟଥା
ଏହା ଶୁଣି ବ୍ରାହ୍ମଣ ହସ ହସ ହୋଇ — ବୋଇଲେ ଶୁଣ ଆଗୋ ଚାରୁଚନ୍ଦ୍ର ମୁହିଁ ।

ଶୁଣିବା, ଦେଖିବା, ଖାଇବା, ପିନ୍ଧିବାର — କର୍ମ ବୋଲି ବୋଲନ୍ତି ଏ ସଂସାରେ ନର
ପ୍ରାଣୀମାନଙ୍କଠାରୁ ଶୁଣି ମୁହିଁ ଏହି ବାଣୀ — ଅଜ୍ଞାନବନ୍ତେ ଥାଏ ସେମାନଙ୍କୁ ଘଣି ।

ବିଜ୍ଞାନୀଲୋକମାନେ ଶାନ୍ତ ଆତ୍ମା ହୋଇ — ବ୍ରହ୍ମକୁ ଭାବନା କରନ୍ତି ପ୍ରାଣ ସହି
ଘ୍ରାଣେ ଘ୍ରେୟ, ଜିହ୍ୱାରେ ସ୍ୱାଦ୍ୟ, ସ୍ପର୍ଶେ ସ୍ପୃଶ୍ୟ — ଶ୍ରବଣରେ ଶ୍ରାବ୍ୟ, ଯେ ନୟନରେ ଦୃଶ୍ୟ

ନୁହଇଁଟି ବ୍ରହ୍ମ ସ୍ୱରୂପ ଆଗୋ ସଖି
କେବଳ ଯୋଗବଳେ ଜନ ପାରେ ଦେଖି
ବ୍ରହ୍ମଠାରୁ ସମସ୍ତେ ହୋଇଛନ୍ତି ଜାତ
ବ୍ରହ୍ମରେ ସମସ୍ତେ ହୁଅନ୍ତି ଅନ୍ତର୍ଭୁକ୍ତ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହିଠାରୁ ବ୍ରାହ୍ମଣ ଗୀତା ବ୍ରାହ୍ମଣର ନିଜ ପତ୍ନୀକୁ ଉପଦେଶ ଦେବା ଛଳରେ ବୁଝାଇ ଅଛନ୍ତି । ପତ୍ନୀ ନିଜ ପତି କର୍ମ ଛାଡ଼ି ବସିଥିବାରୁ ତାଙ୍କ ପୁଣ୍ୟରୁ ସେ ପାଇବା ଭାଗରୁ ବଞ୍ଚିତ ହେଉଛନ୍ତି । ଏହି ଆଶଙ୍କାରେ ସ୍ୱାମୀଙ୍କର ଉପଦେଶ ମାଗିଥିଲେ । ବ୍ରାହ୍ମଣ ତାଙ୍କୁ କହିଲେ ସଂସାରରେ ଆଖିରେ ଦେଖାଯାଉଥିବା ସ୍ଥୂଳକର୍ମକୁ କେବଳ କର୍ମ ବୋଲି କୁହାଯାଉଛି । କର୍ମବିନା ସଂସାରରେ ମନୁଷ୍ୟ ଦିଘଡି ମଧ ରହି ପାରିବ ନାହିଁ । ମନ କର୍ମ ଓ ବଚନ ଦ୍ୱାରା ଯେଉଁ ସବୁ ଶୁଭ ବା ଅଶୁଭ କର୍ମ କରାଯାଇଥାଏ ତା ବ୍ୟତୀତ ଜନ୍ମ, ସ୍ଥିତି ଓ ବିନାଶ ଓ ଶରୀର ଭେଦରେ କର୍ମ ସବୁ ପ୍ରାଣୀମାନଙ୍କର ଅଛି । ରାକ୍ଷସ ସ୍ୱଭାବର ଦୁର୍ଜନମାନେ ସୋମ ଓ ଘୃତ ଆଦି ଦୃଶ୍ୟ ଦ୍ରବ୍ୟମାନ ପ୍ରୟୋଗ କରି କର୍ମଯଜ୍ଞର ବିନାଶ ଆରମ୍ଭ କଲେ । ବ୍ରାହ୍ମଣମାନେ ସେଥିରେ ବ୍ୟଥିତ ହୋଇ ନିଜର ଆତ୍ମାକୁ ପରଂବ୍ରହ୍ମ ପରମାତ୍ମାଙ୍କ ବିରାଜ ସ୍ଥାନ ବୋଲି ଜ୍ଞାନ କଲେ । ଏହି ଅବିନାଶୀ ବ୍ରହ୍ମ କର୍ମେନ୍ଦ୍ରିୟ ଦ୍ୱାରା ଜାଣି ହୁଏ ନାହିଁ । ସୃଷ୍ଟିର ବିସ୍ତାର, ତାଙ୍କଠାରୁ ହେଉଛି ଓ ସେଥିରେ ସେ ଅବସ୍ଥାନ କରନ୍ତି । ପ୍ରାଣ, ଅପାନ, ସମାନ, ବ୍ୟାନ ଓ ଉଦାନ ଏହି ପାଞ୍ଚପ୍ରାଣବାୟୁ, ଏହି ଆତ୍ମାର ପ୍ରକଟ ହୋଇ ଏହିଠାରେ ଲୀନ ହୁଏ । ସମାନ ଓ ବ୍ୟାନ ଏହି ଦୁଇ ବାୟୁ ମଧରେ ପ୍ରାଣ ଓ ଅପାନ ବାୟୁ ବିଚରଣ କରନ୍ତି । ଅପାନ ସହିତ ପ୍ରାଣବାୟୁ ଲୀନ ହେଲେ ସମାନ ଓ ବ୍ୟାନ ମଧ ଲୋପ ହୁଅନ୍ତି । ସମାନ ଓ ପ୍ରାଣବାୟୁ ମଧରେ ଉଦାନ ବାୟୁ ସମସ୍ତଙ୍କୁ ବ୍ୟାପିଥାଏ । ସେହିକାରଣରୁ ଶୋଇଥିବା ସମୟରେ ମଣିଷକୁ ପ୍ରାଣ ଓ ଅପାନ ଛାଡି ଯାଇନଥାଏ । ପ୍ରାଣୀମାନଙ୍କର ଆୟତନ (ଆଧାର) ହେତୁ ବିଦ୍ୱାନମାନେ ଏହାକୁ ଉଦନ କହନ୍ତି । ପଞ୍ଚ ପ୍ରାଣବାୟୁ ଏକ ଅନ୍ୟକୁ ସହାୟ କରେ । ପଞ୍ଚପ୍ରାଣବାୟୁ ମଧରେ ମଝିରେ ଥିବା ସମାନ ବାୟୁ ନାଭିମଣ୍ଡଳରେ ରହେ । ବୈଶ୍ୱାନର ଅଗ୍ନି ସାତଟି ରୂପରେ ପ୍ରକାଶ ପାଇଥାନ୍ତି । ନାସିକା ଜିହ୍ୱା, ନେତ୍ର, ତ୍ୱଚା, କାନ, ମନ, ବୁଦ୍ଧି ଏହି ସାତଗୋଟି ଅଗ୍ନିଙ୍କର ଜିହ୍ୱା । ଶୁଙ୍ଘିବା, ଖାଇବା, ଦେଖିବା, ସ୍ପର୍ଶ କରିବା, ଶୁଣିବା, ମନନ କରିବା ଓ ବୁଝିବାର କର୍ତ୍ତା ଏମିତି ସାତଜଣ ଶ୍ରେଷ୍ଠ ଋତ୍ୱିକ ଅଟନ୍ତି । ଏମାନଙ୍କ କାର୍ଯ୍ୟ ଉପରେ ସର୍ବଦା ଦୃଷ୍ଟି ରଖିବା ଦରକାର । ଏମିତି ସାତଜଣ ହୋତା ସାତଜଣ ହିବିଷ୍ୟାଳୀଙ୍କ ସହିତ ମିଶି ସାତଭାବରେ ବିଭକ୍ତ ହୋଇ ବିଷୟ ଆସକ୍ତି ଛାଡି ତନ୍ମାନ ଆଦି ଯୋନିରେ ଶବ୍ଦ ଆଦି ବିଷୟ ଉତ୍ପନ୍ନ କରନ୍ତି । ପୃଥୀ, ବାୟୁ, ଆକାଶ, ଜଳ, ତେଜ, ମନ, ବୁଦ୍ଧି, ଏ ସାତକୁ ଯୋନି କୁହାଯାଏ । ଆତ୍ମର ଯାହା ସବୁ ଗୁଣ ଅଛି ସେ ସବୁ ଅଗ୍ନି ଜନିତ ଗୁଣ ବୁଦ୍ଧି ବୃତ୍ତିରେ ପ୍ରବେଶ କରିଥାଆନ୍ତି । ଅନ୍ତଃକରଣରେ, ସଂସ୍କାର ରୂପରେ ରହି ଏମାନେ ନିଜ ଯୋନିରେ ଜନ୍ମ ଗ୍ରହଣ କରନ୍ତି । ପ୍ରଳୟ କାଳରେ ଏ ସବୁ ଅନ୍ତଃ କରଣରେ ଥାଇ ପ୍ରାଣୀମାନଙ୍କ ସୃଷ୍ଟି ସମୟରେ ସେଥିରେ ପ୍ରକଟ ହୋଇଥାନ୍ତି । ସେହିଠାରେ ରୂପ, ଶବ୍ଦ, ଓ ସ୍ପର୍ଶ ପ୍ରକଟହୁଏ, ନିଶ୍ଚୟାତ୍ମିକା ବୁଦ୍ଧି ସହିତ ସଂଶୟ ମଧ ଏହିଠାରେ ଜନ୍ମଲାଭ କରେ । ଶ୍ରୁତି ଅନୁସାରେ

ଏହି ପରି ପୁରାତନ ଋଷିମାନେ ପ୍ରାଣ ଆଦି, ରୂପ ଗ୍ରହଣ କରିଥାନ୍ତି । ଜ୍ଞାତା, ଜ୍ଞାନ, ଜ୍ଞେୟ ଏହି ତିନି ଆହୁତିରେ ସମସ୍ତ ଲୋକ ପରିପୂର୍ଣ୍ଣ । ଏହି ସବୁ ଲୋକ ଆତ୍ମଜ୍ୟୋତିରେ ପରିପୂର୍ଣ୍ଣ ହୋଇଥାନ୍ତି ।

ଉଦାନ ପ୍ରାଣ ଖ୍ୟାନ ସମାନ ଅପାନ
ବ୍ରହ୍ମଠାରୁ ଜାତଟି ବୋଲି ଜାଣ ଧନ
ସମାନ ବ୍ୟାନ ଦୁଇ ମଧ୍ୟେ ପ୍ରାଣପାନ
ସଞ୍ଚାରଟି କରୁଅଛନ୍ତି ଅବିଚ୍ଛିନ୍ନ ।

ଆତ୍ମା ତୃପ୍ତ ହେଲେ ସମାନ ବ୍ୟାନ ଦୁଇ
ଲୀନ ହୋଇ ରହନ୍ତି ଶୁଣ କହୁଥାଇ
ଅପାନ ପ୍ରାଣ ଦୁଇ ମଧ୍ୟରେ ଉଦାନ
ବ୍ୟାପି ରହିଅଛିଟି ବୋଲି କରି ଘେନ ।

ଆତ୍ମା ନିଦ୍ରା ଯାଇଣ ଥାଇ ଯେଉଁ କାଳେ
ପ୍ରାଣାପାନ ଛାଡି ନ ଯାନ୍ତି ସେହି କାଳେ
ଏ ପଞ୍ଚ ପବନରେ ସାତୋଟି ପ୍ରକାର
ହୋଇ କରି ରହିଅଛନ୍ତି ବୈଶ୍ୱାନର ।

ଘ୍ରାଣ, ରସନା, ଚକ୍ଷୁ, ତ୍ୱକ, ଶ୍ରୋତ୍ର, ମନ
ବୁଦ୍ଧି ମିଶି ସାତେ ଅଗ୍ନିଙ୍କ ଜିହ୍ୱାସ୍ଥାନ
ଘ୍ରେୟ, ପ୍ରେୟ, ଦୃଶ୍ୟ, ମନ୍ତବ୍ୟ, ସ୍ପୃଶ୍ୟ ବୋଧ୍ୟ
ଶ୍ରାବ୍ୟ ମିଶି ଏ ସାତେ ଅଟନ୍ତି ସମିଧ ।

ଆଘ୍ରାଣ, ଭକ୍ଷୟିତା, ଦ୍ରଷ୍ଟା, ସପ୍ରଷ୍ଟା, ଶ୍ରୋତା
ମନ୍ତା, ବୋଦ୍ଧା ମିଶି ଋତ୍ୱିକ ଏ ବନିତା
ପୃଥ୍ୱୀ, ବାୟୁ, ଆକାଶ,ତେଜ, ଜଳ ମନ
ବୁଦ୍ଧି ମିଶି ସାତୋଟି ଅଟନ୍ତି କାରଣ ।

ଏଥିରୁ ରସ, ଗନ୍ଧ, ରୂପ, ଶବ୍ଦ, ସ୍ପର୍ଶ
ସଂଶୟ, ନିଷ୍ଠା ମିଶି ଏ ସାତେ ପ୍ରକାଶ
ଘ୍ରାଣ, ନୟନ, ଜିହ୍ୱା, ତ୍ୱକ, ଶ୍ରୋତ୍ର, ମନ
ବୁଦ୍ଧି ଏ ସୂକ୍ଷ୍ମରୂପ ଥାଆନ୍ତିଟି ଜାଣ ।

କେହି କାହାକୁ ହିଁ ନ ଜାଣନ୍ତି ନାରୀ
ମୁଁ କହୁଛି ଏହା ହୃଦରେ ଥାଅପରି
ବ୍ରାହ୍ମଣୀ ବୋଇଲେ ହେ ଦ୍ୱିଜ ଶ୍ରେଷ୍ଠ ତାତ
କହ କାହିଁପାଇଁ ନୁହନ୍ତିଟିଏ ଭେଟ ।

ବ୍ରାହ୍ମଣ ବୋଇଲେ ହେଁ ଜିହ୍ୱା, ଚକ୍ଷୁ, କର୍ଣ୍ଣ
ତ୍ୱକ, ମନ, ବୁଦ୍ଧି, ଯେ ଗନ୍ଧର ଗ୍ରହଣ
କରିପାରନ୍ତି ନାହିଁ ଏକା ଘେନେ ଘ୍ରାଣ
କହୁଅଛି ମୁଁ ଆଗୋ ନାରୀବର ଜାଣ ।

ଘ୍ରାଣ, ନୟନ, ତ୍ୱକ, ବୁଦ୍ଧି, ମନ, ଶ୍ରୋତ୍ର
ଜିହ୍ୱା, ବିନା ନୁହନ୍ତି ରସ ଅଧିଗତ
ଘ୍ରାଣ, ଜିହ୍ୱା, ଶ୍ରବଣ, ତ୍ୱକ, ବୁଦ୍ଧି, ମନ
ନକରନ୍ତି ଚକ୍ଷୁ ବିନା ଟି ଦରଶନ ।

ରସନା, ଚକ୍ଷୁ, ଶ୍ରୋତ୍ର, ମନ, ବୁଦ୍ଧି, ନାକ
ସ୍ପରଶ କରି ନ ପାରନ୍ତି, କରେ ତ୍ୱକ
ଘ୍ରାଣ, ଜିହ୍ୱା, ନୟନ, ତ୍ୱକ, ବୁଦ୍ଧି ମନ,
ଶ୍ରୋତ୍ର ବିନା ନ ଜାଣନ୍ତି ଏ ଶବ୍ଦଗୁଣ ।

ଘ୍ରାଣ, ଚକ୍ଷୁ, ରସନା, ତ୍ୱକ, ବୁଦ୍ଧି, ଶ୍ରୋତ୍ର
ସଂଶୟ ଛେତ୍ତା ଏ ସଂଶୟଚ୍ଛେତା ଚିତ୍ତ
ଶ୍ରୋତ୍ର, ତ୍ୱକ, ମନ, ରସନା, ଚକ୍ଷୁ, ଘ୍ରାଣ
ପ୍ରତିକି ନିଶ୍ଚୟକୁ ଘେନେ ବୁଦ୍ଧି ଜାଣ

ଏ ବିଷୟ ଇନ୍ଦ୍ରିୟମାନଙ୍କ ସମ୍ବାଦ
ଯାହା ଅଛି କହିବା ଶୁଣ କହିମୋଦ
ମନ ଦିନେ କହିଲେ ମୋ ବିନା ଇନ୍ଦ୍ରିୟେ
କିଛି ନ ଘେନନ୍ତିଟି କହୁଛି ନିଶ୍ଚୟେ ।

ମୋହରେ ହୀନ ତୁମ୍ଭେ ତୁଅ ଯେଉଁ କାଳେ  ଦିବସ ଚନ୍ଦ୍ର ପ୍ରଭା ପ୍ରକାଶେ ସେ କାଳେ
ଇନ୍ଦ୍ରିୟ ବୋଇଲେ ହେ ନୟନରେ ରସ  ଶ୍ରବଣରେ ଗନ୍ଧ, ଯେ ତୁଷିରେ ସ୍ୱରଶ ।

ନାସିକାରେ ରୂପ, ତ୍ୱକରେଟି ଶବଦ  ପାରିବ କି ଘେନି ହେ ମନ ଥରେ ବଦ
ଏହି ସବାଙ୍କୁଁ ଜାଣ ମନ ହେ ତୁମ୍ଭଙ୍କୁ  କହୁଛି ଆମ୍ଭେ ଛାଡି ନ ପାର ଆମ୍ଭଙ୍କୁ ।

ଆମ୍ଭେ ସେହି ରୂପେ ତୁମ୍ଭଙ୍କୁ ଛାଡିକରି  କିଛି ଚେଷ୍ଟା ସଂସାରେ ନ ପାରୁଟି କରି
ପ୍ରାଣ, ଉଦାନ, ବ୍ୟାନ, ସମାନ, ଅପାନ  ପବନଟି ହୋତା ଅଟନ୍ତି ପ୍ରାଣଧନ ।

ଏ ପଞ୍ଚପବନେ କେ ବଡ ବୋଲି କରି  ଗୁହାରି କଲେ ଯାଇ ସାବିତ୍ରୀ-ବିହାରୀ (ବ୍ରହ୍ମ)
ବ୍ରହ୍ମା ବୋଇଲେ ଆହେ ତୁମ୍ଭ ପାଞ୍ଚଙ୍କରେ  ଇନ୍ଦ୍ରିୟକୁ ସଞ୍ଚାର କରେ ନିରନ୍ତରେ ।

ଯେଉଁ ପବନଟି ସେହି ଟି ଅଟେ ବଡ  ଥାଉ କେହି ତାହାକୁ ବଚନେ ନ ତୁଡ
ପ୍ରାଣପବନ ତାହାଶୁଣି ଗର୍ବ ବହି  ଆଗ କରି କହିଲେ ବ୍ରହ୍ମାଙ୍କୁ ଅନାଇ ।

ମୁଁ ଲୀନ ହେଲେ ସବୁ ଇନ୍ଦ୍ରିୟଟି ଲୀନ  ମୁଁ ଥିଲେ ପ୍ରକାଶ ଇନ୍ଦ୍ରିୟ ହୋଏ ଜାଣ
ଏତେବୋଲି ପ୍ରାଣ ପବନ ଲୀନ ହୋଇ  ଟିକି ଏକ ଉତ୍ତାରୁ ସଞ୍ଚରିଲା ସେହି ।

ତାହା ଦେଖି ସମାନ, ଉଦାନ କହିଲେ  ତୋତେ ବଡ ଅପାନ ପବନଟି ଭଲେ
ଅପାନ ବୋଇଲା ରେ ପ୍ରାଣ ହେଲୁ କାଇ  ମୁଁ ଲୀନ ହେଲେ ପ୍ରାଣୀ ଇନ୍ଦ୍ରିୟ କି ଥାଇ ।

ତାହା ଶୁଣିଣ ବ୍ୟାନ ତୁଲରେ ଉଦାନ  କହିଲା ଅପାନକୁ ଅଟୁ ବଡ ହୀନ
ବ୍ୟାନ ବୋଇଲା ଆରେ ମୁଁ ଲୀନ ହୋଇଲେ  ଇନ୍ଦ୍ରିୟଯାକ ଲୀନ ହୋଇଯାଏ ଭଲେ ।

ପ୍ରାଣାପାନୋଦନ ସମାନ ଚାରି ବାତ  ବ୍ୟାନକୁ ବୋଇଲେ ତୋ ବଳ ତ ବିଦିତ
ଏତେ କଥା କିମ୍ପା କହୁଛୁ ଆମ୍ଭ ଆଗେ  ଲାଜ ନାହିଁକିରେ ତୋହର ମୁଖ ଭାଗେ ।

ବ୍ରହ୍ମା ବୋଇଲେ ଆହେ ଅନ୍ୟୋନ୍ୟ ରକ୍ଷଣ  ହେବାରୁ ତୁମ୍ଭେ ପାଞ୍ଚେବଡ ଜାଣ
କାହିଁପାଇଁ ସମସ୍ତେ ହେଉଅଛ କଳି  ଏହା ଶୁଣି ମୋହର ହୃଦ ହୋଏ ଗୋଳି

ଚେଁ ପୁଣି ବ୍ରାହ୍ମଣ ବୋଇଲେ ନାରଦ  ଦେବମତ ସମ୍ବାଦ ଶୁଣ କହି ମୋଦ
ଦେବମତ ବୋଇଲେ ପାଞ୍ଚ ପବନରେ  ଜନମ ନୋହୁଁ ରହିଥା ଏବେ ଅଙ୍ଗରେ ।

ଏହାମୋହ ଆମ୍ଭେ କହତ ଋଷିବର  ନାରଦ ଶୁଣିବାକୁ ଇଚ୍ଛା ହୋଏ ମୋର
ନାରଦ ବୋଇଲେ ହେ ଶୁଦ୍ର, ରଜ ମିଶି  ଗର୍ଭ ହେଲେ କଢ଼ାଏ ପ୍ରାଣବାତ ଆସି ।

କ୍ରମରେ ଆଉ ଚାରିପବନ ପ୍ରାଣରେ  ମିଶିକରି ଶରୀର କଢ଼ାନ୍ତି ନିର୍ଭରେ
ଆଉ କଥାଟିଏ କହିବା ରେ ନବୀନା  ଶୁଣ ତା ମୋହଠାରୁ ହୋଇ ଏକମନା ।

ଇନ୍ଦ୍ରିୟ, ଆତ୍ମା, ମୋକ୍ଷ, ବିଷୟ ଏ ଚାରି    କଥାରେ ଟି ଜାଣ ଜଗତ ଅଛି ପୂରି
ସେ ଜଗତରେ ଶାନ୍ତବେଦ ନାରାୟଣ    ଦେବଙ୍କୁ ଏକାଗ୍ରରେ ପାଉଅଛି ଜାଣ ।

ହୃଦୟସ୍ଥିତି ବ୍ରହ୍ମବିନା ଆନ ଠାରେ    ଶାସ୍ତ୍ର ଶବ୍ଦ ଜାଣ ସମ୍ଭବି ନ ପାରେ
ଗୁରୁ, ସୁହୃଦ, ଶ୍ରୋତା, ଦ୍ୱେଷ୍ଟାଟି ହୃଦୟ    ସ୍ଥିତ ବୋଲି ଜାଣ ଗୋ ମୋ ଜୀବନପ୍ରିୟ ।

ପୂର୍ବରେ ଦେବତାଏ ଋଷିଙ୍କ, ସଙ୍ଗତେ    ଭେଟିଲେ କୁଶଧର ବ୍ରହ୍ମା ମହାମତେ
ବ୍ରହ୍ମାଙ୍କୁ ପଚାରିଲେ ଯେଉଁ କଥାଶ୍ରେୟ    ସେ କଥା ପିତାମହ କରତ ଉଦୟ ।

ବ୍ରହ୍ମାବୋଇଲେ ହେ ପ୍ରଣବ ଏ ସଂସାରରେ    ଶ୍ରେୟ ଅଟଇ ଏହା ବିଚାର ମନରେ
ଏରୂପେ ଦେବଋଷି ବ୍ରହ୍ମାଠାରୁ ଶୁଣି    ତାହା ନ କରି କଲେ କଥା ଆନଶ୍ରୋଣୀ ।

କେତେ ଲୋକ ବିଷୟ କରି ବରଜନ    କେବଳ ଇନ୍ଦ୍ରିକେ ରର୍ଖିଲେ ନେଇମନ
ପାପ, ଶୁଭ, ସୁଖ ଏ ତିନି ମଧ୍ୟେ ରତି    ଯା ଯହିଁ ସେପରି ବୋଲାଏ ସେ ଜଗତି ।

ଏ ତିନୋଟି କଥାକୁ ଛାଡ଼ିଅଛି ଯେହି    ବ୍ରହ୍ମଚାରୀ ବୋଲିତାହାକୁ ଜାଣ କହି
କାମ, କ୍ରୋଧ, ସୁଖ, ସଲିଳରେ ଆବୃତ    ଦୁର୍ଗକୁ ମୁଁ ଛାଡ଼ି କରି ଗୋ ପ୍ରାଣମିତ ।

ବନ ମଧ୍ୟରେ ଆସି ପ୍ରବେଶ ହୋଇଛି    ମୋତେ ଆଉ ତୁମ୍ଭେ ନ ପଚାର ଗୋ କିଛି
ବ୍ରାହ୍ମଣୀ ବୋଇଲେ ହେ ବନର କି ରୂପ    ଜାଣିଥିଲେ ମୋ ଆଗେକହ ଦ୍ୱିଜ ନୃପ ।

ବ୍ରାହ୍ମଣ ବୋଇଲେ ସେ ବନ ସ୍ଥୁଳ ସୂକ୍ଷ୍ମ    ରୂପରେ କାହିଁ ନାହିଁ ନାରୀଙ୍କ ଉତ୍ତମ
ସେ ବନେ ରହିଲେ ନ କରେ ଲୋକ ଶୋକ    ଆଶ୍ରୟ କରି ନ ପାରଇ ହୃଦେ ଦକ ।

ପଞ୍ଚତନମାତ୍ର, ମହତ, ଅହଙ୍କାର,    ଏ ସାତୋଟି ଅଟନ୍ତି ବୃକ୍ଷ ସେ ବନର
ଛଅ ଇନ୍ଦ୍ରିୟ, ବୁଦ୍ଧି ମିଶିଣ ସାତୋଟି    ଫଳକୁ ସେ ବୃକ୍ଷ କରିଥାଏ ଗୋଟି ।

ରୂପାଦି ପଞ୍ଚ ସୁଖ ଦୁଃଖ ଅତିଥିରେ    ପ୍ରାର୍ଥିତ ହୋଇଅଛି ଜାଣ ନିରନ୍ତରେ
ପଞ୍ଚମହାଭୂତ ଯେ ପ୍ରକୃତି ପୁରୁଷ    ଏ ସାତ ଆଶ୍ରମରେ ଯୁକ୍ତ ସେ ନାରୀଶ ।

ଭୂତ ଚତୁଷ୍ଟୟ ଯେ ବୁଦ୍ଧି, ଆତ୍ମାମନ    ସାତଙ୍କ ସେ ବନ ସମାଧି ବୋଲି ଯେନ
ଏ ଯୋଗ ମାନଙ୍କର ସାତ ଉପଦେଶ    ସାତ ଦୀକ୍ଷା ବୋଲିଣ ବିଚାର ମାନସ ।

ପଞ୍ଚଭୂତ ବୃକ୍ଷେ ଯେ ଯାହା ଗୁଣ ପୁଷ୍ପ    ଧରି ରହି ଅଛନ୍ତି ସେ ବନେ ଅମାପ
ପରମାତ୍ମା ଅଗ୍ନିହୋଇ ସେ ବନ ମଧ୍ୟେ    ବିହାର କରୁଛନ୍ତି ଜାଣ ଅତି ଶ୍ରଦ୍ଧେ ।

ସେ ବନ ଆଶ୍ରା କରି ମହର ଋଷିଗଣ    ବ୍ରହ୍ମାଙ୍କର ଠାରେଟି ନିବସନ୍ତି ମନ
ପଞ୍ଚମହାଭୂତେ ଦେହରେ ଛନ୍ତି ରହି    ତେବେ ହେଲେ ତାଙ୍କର ଗୁଣ ନ ଭାବନ୍ତି ।

୨୮ ଅଧାୟରେ ବର୍ଣ୍ଣିତ ଅଧର୍ଯ୍ୟୁ ଯତି ସମ୍ବାଦ ଓ ଜ୍ଞାନୀ ପୁରୁଷଙ୍କ ସ୍ଥିତି ବର୍ଣ୍ଣନା ଥିବାରୁ କେତେକ ଏହାକୁ ପ୍ରକ୍ଷିପ୍ତ ବୋଲି ମନେ କରିଥାଆନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଏହି ଅଧାୟରେ କୁହାଯାଇଛି ଯେ ବୁଦ୍ଧି ଓ ଇନ୍ଦ୍ରିୟ ମାନଙ୍କର ରାଗ ଦ୍ୱେଷ ରହିଥିବା ଯୋଗୁ ବିଦ୍ୱାନ କର୍ମରେ ଲିପ୍ତ ହୋଇନଥାଏ । ତେଣୁ ପଶୁ ବଧ ଯଜ୍ଞରେ ଦୋଷାବହ ନୁହେଁ । କିନ୍ତୁ ଏହି ଯୁକ୍ତି ଶ୍ରୁତି ସମ୍ମତ ବିରୋଧ ଯୁକ୍ତ ବୋଲି ପ୍ରତୀତ ହୁଏ ।

ଏ ବିଷୟେ ଅଧର୍ଯ୍ୟୁ ଯତିଙ୍କ ସମ୍ବାଦ ଯା ଅଛି ତା କହିବା ଶୁଣ କହି ମୋଦ
ଅଧ୍ୱର୍ଯ୍ୟୁ ଯାଗ କରି ପଶୁର କେକଟି ମୋଡ଼ିବାବେଳେ ଯତି କ୍ଷୁର୍ଣ୍ଣ ବାନଟି ।

ବୋଇଲେ ଦ୍ୱିଜଜନ୍ମ ହୋଇଏ ଅଧର୍ମ କରୁଛୁ କି, ପାଇବୁ ଯାଇ ସ୍ୱର୍ଗ ଗ୍ରାମ
ଅଧ୍ୱର୍ଯ୍ୟୁ ବୋଇଲେ ହେ ଏ ଛେଳିର ନାଶ କେବେ ନାହିଁ ତାଣ ଯାଗରେ ଯତିଇଶ ।

ବେଦ ଲେଖିଅଛି ଏ ଛେଳି ହେଲେ ହତ ପଞ୍ଚଭୂତେ ହେବେ ଯେ ଯାହା ସ୍ଥାନେ ରତ
ଯତି ବୋଇଲେ ଥାହେ ଯାଗରେ ଛେଳିକି ମାଇଲେ ଯେବେ ପାଉଅଛୁ ସେ ଗତିକି ।

ତେବେ ତୁମ୍ଭର ତ ଯାଗରେ କିଛି କାର୍ଯ୍ୟ ଥିଲା ପରି ଦିଶୁନାହିଁ ହେ ଦ୍ୱିଜରାଜ
ପଣ୍ଡିତେ କହିଛନ୍ତି ସବୁ ଧର୍ମଙ୍କରେ ଅହିଂସାଟି ସାର ଅଟଇ ଏ ସଂସାରେ ।

ଅଧ୍ୱର୍ଯ୍ୟୁ ବୋଇଲେ ହେ ହିଂସା, ବିନା ଚେଷ୍ଟା କରି ନ ପାରଇଟି କଲେ ଯେତେ ନିଷ୍ଠା
ଯତି ବୋଇଲେ ମୁହିଁ ସବୁଠାରେ ସମ ବୁଦ୍ଧି କରିଣ ହୋଇଅଛି ଯେ ନିର୍ମମ ।

ଏହି ସଦାଗରୁଟି ପାତକକୁ ଭୟ କରୁନାହିଁ ଜାଣ ମୋହର ଏ ହୃଦୟ
ଅଧ୍ୱର୍ଯ୍ୟୁ ବୋଇଲେ ତୁମ୍ଭର ମତଶୁଣି ଆନନ୍ଦ ହେଉଛି ମୁଁ ମନେ ମନେ ଗୁଣି ।

କେବଳ ଦେବ କୃତ ମତ ଆଚରିଛି ଏ ସଦାଗୁଁ ପାପରୁ ଭୟ ଛାଡ଼ିଅଛି ।
ଏହା ଶୁଣି ଯତି ରହନ୍ତେ ମୂକ ହୋଇ ଅଧ୍ୱର୍ଯ୍ୟୁ ଯାଗ ତହୁଁ ଦେଲେ ପ୍ରବର୍ତ୍ତାଇ ।
ଏହି ସଦାଗରୁ ଟି ମୋକ୍ଷ ଅତି ସୂକ୍ଷ୍ମ ଅଟଇ ତାଣ ଆରୋ ଯୁବତୀ ଉତ୍ତମ ।

ବ୍ରାହ୍ମଣ ଗୀତାର ୨୯ ଅଧାୟରେ ପରଶୁରାମଙ୍କ ଦ୍ୱାରା କ୍ଷତ୍ରିୟକୁଳ ସଂହାର ୩୦ ଅଧାୟରେ ଅଳର୍କଙ୍କର ଧାନଯୋଗର ଉଦାହରଣ ଦେଇ ପିତାମହ ବ୍ରହ୍ମା ପରଶୁରାମଙ୍କୁ ବୁଝାଇବା, ପରଶୁରାମଙ୍କ ତପସ୍ୟାଦ୍ୱାରା ସିଦ୍ଧିପ୍ରାପ୍ତି ବର୍ଣ୍ଣନା କରାଯାଇଛି । ୩୧ ଅଧାୟରେ ରାଜା ଅମ୍ବରୀଷଙ୍କର ବର୍ଣ୍ଣିତ ଆଧାତ୍ମିକ ସ୍ୱରାଜ୍ୟ ବିଷୟକ ଗାଥା ୩୨ ଅଧାୟରେ ବ୍ରାହ୍ମଣରୂପଧାରୀ ଧର୍ମ ଓ ରାଜର୍ଷି ଜନକଙ୍କ ମହତ୍ତ୍ୱ ତ୍ୟାଗ ବିଷୟକ ସମ୍ବାଦ କୁହାଯାଇଅଛି । ୩୩ ଅଧାୟରେ ବ୍ରାହ୍ମଣ ନିଜ ପତ୍ନୀପ୍ରତି ଆପଣାର ଜ୍ଞାନନିଷ୍ଠ ସ୍ୱରୂପର ପରିଚୟ ଦେଇଅଛନ୍ତି । ଶେଷରେ ୩୪ ଅଧାୟରେ ଭଗବାନ

ଶ୍ରୀକୃଷ୍ଣ ବ୍ରାହ୍ମଣ ବ୍ରାହ୍ମଣୀ ଓ କ୍ଷେତ୍ରଜ୍ଞ ବିଷୟକ ରହସ୍ୟ ଉଦ୍‌ଘାଟନ କରି ବ୍ରାହ୍ମଣ ଗୀତାର ସମାପ୍ତି କରିଅଛନ୍ତି ।

କାର୍ତ୍ତବୀର୍ଯ୍ୟ ରାଜା ମହୀରେ ରାଜା ହେଲେ ସାଗରାନ୍ତ ସଂପତ୍ତି ଆପଣାର ବଳେ
ଦିନେ ସେ ସମୁଦ୍ରଙ୍କ ସମୀପକୁ ଯାଇ ସମୁଦ୍ରଙ୍କୁ କାଣ୍ଡ ବିନ୍ଧିଲେ ରୋଷ ବହି ।

ତାହା ଦେଖି ସମୁଦ୍ର ଧରି ନିଜରୂପ ବୋଇଲେ ହେ ନୃପ ନ କର ମନେ କୋପ
ମୋ ଜଳରେ ଯେତେ ଅଛନ୍ତି ଜୀବ ରହି ମଲେ ସେ ତୁମ୍ଭ କାଣ୍ଡ ଘଣ୍ଡଦେଶେ ବହି ।

ଏ ସବାଙ୍କୁଁ କହୁଛି ତୁମ୍ଭ ଅନୁରୂପ ନୃପଠାରେ ନୃପତି ଛାଡ଼ ତୁଦତାପ
କାର୍ତ୍ତବୀର୍ଯ୍ୟ ବୋଇଲେ ମୋ ସମାନ ବଳୀ କାହିଁ ଅଛି କହ ତ ସିନ୍ଧୁ ମନେ ଭାଳି ।

ସମୁଦ୍ର ବୋଇଲେ ହେ ଜମଦଗ୍ନୀ ସୁତେ ଅଛନ୍ତି ବଳିଆର ଯୁଦ୍ଧ ମହାମତେ
ଏହା ଶୁଣିଣ କାର୍ତ୍ତବୀର୍ଯ୍ୟ କ୍ରୋଧ ହୋଇ ଜମଦଗ୍ନିଙ୍କର ଆଶ୍ରମେ ହେଲେ ଯାଇ ।

ରାମଙ୍କୁ କ୍ରୋଧ କରାଇବାକୁ ଉପାୟ ଭାବି କରିଲେ ଜମଦଗ୍ନିଙ୍କ ଅପ୍ରିୟ
ରାମ ତାହା ନ ସହି ପର୍ଶୁ କରେ ବହି କାଟିଲେ କାର୍ତ୍ତବୀର୍ଯ୍ୟ ବାହୁ କ୍ରୋଧହୋଇ ।

ଏହା ବାହାରେ ପୁଣି ପରଶୁରେ ମୁଣ୍ଡ ପରଶୁରାମ କାଟି ଗଡ଼ାଇଲେ ଦାଣ୍ଡ
ତା ଦେଖି କାର୍ତ୍ତବୀର୍ଯ୍ୟ ଲୋକ ଗୋଟି ହୋଇ ଯୁଦ୍ଧେ ତାଙ୍କୁ ରାମ ଶୁଆଇଲେ ମହୀ ।

ଏହା କରି ସାରିଣ ପରଶୁରାମ ବୀର ରକତରେ ଅଙ୍କୁ କରି ଜରଜର
ମହୀମଧେ ଯେତେ କ୍ଷତ୍ରିୟ ରହିଥିଲେ ସେମାନଙ୍କୁ ମଧ ସେ ମାରିପକାଇଲେ ।

କ୍ଷତ୍ରିୟ ସ୍ତିରୀଙ୍କ ପେଟକୁ ପରଶୁରେ କାଟି ପିଲା ମାରଲେ ରାମ ନିର୍ଦ୍ଦୟରେ
ଏହି ରୂପେ ଏକୋଇଶ ଥର ଯେ କ୍ଷତ୍ରିୟ କ୍ଷୟ କରିଲେ ଜମଦଗ୍ନିଙ୍କ ତନୟ ।

ଏତିକି ଅଧରମ ନ କର ବ୍ରାହ୍ମଣ ଜନମକୁ ତ ପାଇଅଛ ହେ ଆପଣ
ରାମବୋଇଲେ ଯେ ବାପାଙ୍କୁ କାର୍ତ୍ତବିର୍ଯ୍ୟ ମାରିବାରୁ ମାରୁଛି କ୍ଷତ୍ରିୟ ସମାଜ ।
ତୁମ୍ଭେ କାହିଁପାଇ ନିଷେଧ କରୁଅଛ ମାରିବି ମୁହିଁ ଖୋଜି କ୍ଷତ୍ରିୟଙ୍କ ବଂଶ
ପିତୃମାନେ ବୋଇଲେ ଅଯୁକତ କର୍ମ କହିଲେ କିଂପା ନ ଛାଡୁଛୁ ଦ୍ୱିଜୋତ୍ତମ ।

ଏହି ବିଷୟେ ପୁରାତନ ଇତିହାସ ଯାହା ଅଛି ତା ଶୁଣ ଦେଇଣ ମାନସ
ଅଳର୍କ ରାଜା ଧନୁର୍ବିଦ୍ୟାରେ ଧରଣୀ ଜିଣି ବ୍ରହ୍ମଧ୍ୟାନ କରିବି ମନେ ଗୁଣି ।

ମନକୁ କାଣ୍ଡ ବିନ୍ଧି ନାଶିବି ଭାବିଲେ ମନ ନିବର୍ତ୍ତିଲେ ଯେ ଯାଗ ହେବ ଭଲେ
ମନ ବୋଇଲେ ନ ବିନ୍ଧଟି ମୋତେ କାଣ୍ଡେ ପଡିବ ଆହେ ତୁମ୍ଭେ ଯାଇ ଯମଦଣ୍ଡେ ।

ଯେଉଁ ବାଣ ବିନ୍ଧିଲେ ନମରିବ ତୁମ୍ଭେ
ଏହା ଶୁଣି ଘ୍ରାଣ ବୋଇଲା ମୋର ନାଶ
ଆଗ ଏହାକୁ ମୁହିଁ ପକାଇବି କାଟି
ନାଶ ବୋଇଲା ଆହେ ଅବନୀ ନାୟକ
ଏହା କହୁଁ ଅଳର୍କ ବୋଇଲେ ଜିଭକୁ
ଜିଭ ବୋଇଲା ହେ କାଟିବ ଯେବେ ମୋତେ
ଜିଭଠାରୁ ଶୁଣିଣ ଏମନ୍ତ ଉତ୍ତର
ଏ ରୂପେ ଶ୍ରୋତ୍ର ଚକ୍ଷୁ ତ୍ୱକ୍ ବହି କହି
ଅଳର୍କ ଘୋର ତପ କରି ସାତଙ୍କର
ବହୁତ କାଳ ଅନ୍ତେ ଯୋଗ ମାରଗଣ
ସେହି ବାଣଙ୍କରେ ଇନ୍ଦ୍ରିୟଙ୍କର ନାଶ
ମହତ ସିଦ୍ଧିପାଇ ପାଇଲେ ବ୍ରହ୍ମକୁ
ଆହେ ପରଶୁରାମ ଜାଣି ଏହି କଥା
ଏରୂପେ ପିତୃଏ ବୋଲନ୍ତେ ପର୍ଶୁରାମ

ମୁଁ ମରିବି ସେ ବାଣ ବିନ୍ଧ ବୋଲୁ ଆମ୍ଭେ
ଯେନୁ ଅଛି ଏ ସଂସାରରର ଗନ୍ଧ ଯାକ ।
ପଛେ ବିଚାରିବି ବ୍ରହ୍ମାଙ୍କ ଭାବନାଟି
କାଟିଲେ ତୁମ୍ଭେ ବୋଲାଇବଟି ଅନାଥ ।
କାଟି ଏ ଖାଉଛି ସମସ୍ତ ରସକୁ
ସାଧିବ ଯୋଗବସି ଯମଙ୍କ ପୁରତେ ।
ତ୍ୱଗିଇନ୍ଦ୍ରଠାରେ ନମିଲେ ନରବର
ବୋଧିଲେ ଅଳର୍କକୁ ଜାଣ କହୁଥାଇ ।
ନ ଜାଣିଲେ ବିନାଶ କରିବାକୁ ଶର
ପାଇଲେ ସେ ସାତଙ୍କ ନାଶ ପାଇଁ ଜାଣ ।
କଲେ ଏବ ମନେ ସେ ଅଳର୍କ ନରେଶ
ତାରିତ ଥିଲେ ଯୋଗ ବଳରେ ଆତ୍ମାକୁ ।
ତପ କରି, ନ ଦିଅ କ୍ଷତ୍ରିୟଙ୍କୁ ବ୍ୟଥା
ତପ କରିଲେ ଛାଡ଼ି କ୍ଷତ୍ରିୟଙ୍କୁ ତମ ।

୨୯ ଓ ୩୦ ଅଧ୍ୟାୟର ସାରାଂଶ :-

ରାଜା କାର୍ତ୍ତବୀର୍ଯ୍ୟ ସମୁଦ୍ରକୁ କାଣ୍ଡ ବିନ୍ଧିଲାରୁ ସେ ତଦ୍ୱାରା ଜଳଜନ୍ତୁମାନେ ବିନଷ୍ଟ ହେବା ଆଶଙ୍କା ବ୍ୟକ୍ତକଲେ । ନିଜ ସମାନ ଯୋଦ୍ଧାଙ୍କ ପରିଚୟ ମାଗିବାରୁ ସମୁଦ୍ର ଜମଦଗ୍ନି ଋଷିଙ୍କ ପୁତ୍ର ପରଶୁରାମଙ୍କ କଥା କହିଲେ । କାର୍ତ୍ତବୀର୍ଯ୍ୟ ଜମଦଗ୍ନିଙ୍କ ଆଶ୍ରମକୁ ଯାଇ ଉପଦ୍ରବ କରନ୍ତେ କ୍ରୁଦ୍ଧ ପରଶୁରାମ ତାଙ୍କୁ ହତ୍ୟା କଲେ । ସମସ୍ତ କ୍ଷତ୍ରୀୟମାନଙ୍କୁ ଶତ୍ରୁଜ୍ଞାନକରି ସେ ସେମାନଙ୍କୁ ବାରମ୍ବାର ହତ୍ୟା କଲେ । ପେଟର ସନ୍ତାନକୁ ମଧ ଗର୍ଭରୁ ଚିରି ହତ୍ୟା କଲେ । କ୍ଷତ୍ରିୟମାନେ ଭୟରେ ନିଜର ପରିଚୟ ଗୋପନ କରି ଆଚାର ତ୍ୟାଗ ଫଳରେ ଶୁଦ୍ର ହୋଇ ରହିଲେ । ନିଯୋଗ ପ୍ରଥାରେ ବ୍ରାହ୍ମଣମାନେ ଉତ୍ପାଦନ କରିବା ସନ୍ତାନମାନଙ୍କୁ ମଧ ପରଶୁରାମ ହତ୍ୟା କଲେ । ଏହିପରି ୨୧ଥର ହତ୍ୟାକଲା ପରେ ଆକାଶବାଣୀ ହୋଇ ଏପ୍ରକାର ହିଂସ୍ର ଆଚରଣରୁ ନିବୃତ୍ତ ହେବାକୁ ତାଙ୍କୁ ଉପଦେଶ ମିଳିଲା । ତାଙ୍କ ପିତାମହ ଋଚିକ ଓ ଅନ୍ୟ ପିତୃପୁରୁଷ ମାନେ ମଧ ତାଙ୍କୁ ହିଂସାର ଅସାରତା ଜଣାଇଲେ । ସେମାନେ ପରଶୁରାମଙ୍କୁ ରାଜର୍ଷି ଅଳର୍କଙ୍କର ଉପାଖ୍ୟାନ ଶୁଣାଇଲେ । ଅଳର୍କ ସମସ୍ତ କର୍ମାରମ୍ଭ ତ୍ୟାଗ କରି ବୃକ୍ଷତଳେ ବସି ସୂକ୍ଷ୍ମତତ୍ତ୍ୱ ଖୋଜିବାରେ ଲାଗିଲେ । ଇନ୍ଦ୍ରିୟମାନଙ୍କୁ

ବାଣଦ୍ୱାରା ହତ୍ୟା କରିବାକୁ ବସିଲାରୁ ସେମାନେ ଏହାର ଅସାରତା ବୁଝାଇଲେ । ମନବୁଦ୍ଧି ସହିତ ପାଞ୍ଚ ଇନ୍ଦ୍ରିୟଙ୍କୁ ମାରିବା ନିମିତ୍ତ କୌଣସି ଉତ୍ତମ ବାଣର ସଂଧାନ ସେ ପାଇପାରିଲେ ନାହିଁ । ବହୁଦିନ ଗଭୀର ଚିନ୍ତା ଓ ବିଚାର ଫଳରେ ବୁଦ୍ଧିମାନ ରାଜା ଅଳର୍କ ଜାଣି ପାରିଲେ ଯେ ଯୋଗଠାରୁ ଶ୍ରେଷ୍ଠ କୌଣସି କଲ୍ୟାଣକାରୀ ସୁଖକର ସାଧନ ନାହିଁ । ଧ୍ୟାନଯୋଗ ରୂପକ ବାଣରେ ସେ ସବୁ ଇନ୍ଦ୍ରିୟମାନଙ୍କୁ ପରାସ୍ତ କଲେ ଓ ଧ୍ୟାନ ଯୋଗଦ୍ୱାରା ଆତ୍ମାରେ ପ୍ରବେଶ କରି ପରମ ସିଦ୍ଧି ପାଇ ପାରିଲେ । ଏହି ଉପଖ୍ୟାନରେ ପ୍ରଭାବିତହୋଇ ପରଶୁରାମ ହିଂସାଛାଡ଼ି ଯୋଗ ସାଧନରେ ଲାଗିଲେ ଓ ତପସ୍ୟାଦ୍ୱାରା ସିଦ୍ଧିଲାଭ କଲେ ।

ଏହା କହି ବ୍ରାହ୍ମଣ ବୋଇଲେ ଗୋ ନାରୀ ଶୁଣ ଆନ କଥାଏ କହିବି ବିସ୍ତାରି ।
ହରଷାନନ୍ଦ, ପ୍ରୀତି, ସତ୍ତ୍ୱଗୁଣ, ଶତ୍ରୁ ଲୋକଙ୍କର ଏହା ମନରେ କର ହେତୁ ।
ତୃଷ୍ଣା, କ୍ରୋଧ, ସଂରଂଭ ଅଟେ ରଜୋଗୁଣ ଶତ୍ରୁବୋଲି ତାକୁ ମୋ କହିବାରୁ ଜାଣ ।
ଶ୍ରମ, ତନ୍ଦ୍ରା, ମୋହ ଏ ତିନି ତମଗୁଣ ଶତ୍ରୁ ଅଟଇ ଆଗୋ ନବୀନାରତନ ।
ଏହିମାନେ ଜାଣି ଯେ ଏମାନ ଜିଣିଛି ବ୍ରହ୍ମଙ୍କର ଭୁବନେ ସ୍ଥାନ ସେ ପାଉଛି ।

**୩୧ ଅଧ୍ୟାୟରେ ସାରାଂଶ ହେଲା :**

ବ୍ରାହ୍ମଣ ଉପଲବ୍ଧି କଲେ ସଂସାରରେ ସତ୍ୱ, ରଜ, ତମ ଏହି ତିନିଗୁଣ ମୋର ଶତ୍ରୁ । ହର୍ଷ ପ୍ରୀତି ଆନନ୍ଦ ଏ ସତ୍ୱଗୁଣର, ତୃଷ୍ଣା କ୍ରୋଧ ଓ ଦ୍ୱେଷ ଏ ରଜୋଗୁଣର ଓ ଶ୍ରମତନ୍ଦ୍ରା ଓ ମୋହ ଏ ତମୋ ଗୁଣର ପରିଚୟ ଦିଅନ୍ତି । ଶାନ୍ତଚିତ୍ତ, ଜିତେନ୍ଦ୍ରିୟ, ଅଳସଶୂନ୍ୟ, ଧୈର୍ଯ୍ୟଶୀଳ ପୁରୁଷ ଶମଦମ ଆଦି ବାଣଦ୍ୱାରା ଏମାନଙ୍କୁ ଜିତିଥାଏ । ଏପ୍ରସଙ୍ଗରେ ରାଜା ଅମ୍ବରିଷ ଉପାଖ୍ୟାନ ସେ ବ୍ରାହ୍ମଣୀଙ୍କୁ ଶୁଣାଇଲେ । ରାଜା ଅମ୍ବରିଷ ନିଜ ରାଜ୍ୟରେ ନିଜର ଦୋଷକୁ ଦମନ କରି ଓ ଗୁଣମାନଙ୍କୁ ଆଦର କରି ଉତ୍ତମ ସିଦ୍ଧି ପାଇଥିଲେ । ମାତ୍ର ସେ ନିଜର ଲୋଭ ଜିତି ପାରି ନ ଥିବାରୁ ଦୁଃଖ କଲେ । ଲୋଭ ବଶରୁ ମନୁଷ୍ୟ ସଂସାରରେ ନୀଚ କର୍ମ କରେ ଓ ସେଥିରୁ ଲାଭ ପାଇବାକୁ ଦଉଡୁଥାଏ ।ଲୋଭରୁ କାମନା ଓ କାମନାରୁ ଚିନ୍ତା ଜାତ ହୁଏ । ବିଭିନ୍ନ କର୍ମ ହେତୁ ସେ କର୍ମ ବନ୍ଧନରେ ବାନ୍ଧି ହୋଇ ରହେ । ଫଳରେ ସେ ଜନ୍ମମୃତ୍ୟୁ ବାରମ୍ବାର ବରଣ କରେ ।

ଅମ୍ବରୀଷ ଏହା ଉପଲବ୍ଧି କରି ଲୋଭକୁ ଧୈର୍ଯ୍ୟର ସହିତ ଆୟତ୍ତ କଲେ । ଫଳରେ ଆତ୍ମରାଜ୍ୟ ଉପରେ ଦଖଲ ପୁନସ୍ଥାପିତ କଲେ । ସେ ଉପଲବ୍ଧି କଲେ ଆତ୍ମାର ଯଥାର୍ଥ ଜ୍ଞାନ ଓ ଆତ୍ମାର କର୍ତ୍ତୃତ୍ୱ ଜ୍ଞାନ ଯଥାର୍ଥ ସ୍ୱରାଜ୍ୟ ବିଷୟକ ଆଧାତ୍ମିକ ଜ୍ଞାନ ।

ଏହି ବିଷୟରେ ଯେ ଅମ୍ବରୀଷ ରାଜା ଯାହା ବୋଲିଛନ୍ତି ଶୁଣ ଦେଇମଜ୍ଜା
ସବୁ ଶତ୍ରୁ ଜିଣିଲି ଲୋଭ ଶତ୍ରୁ ମୁହିଁ ଜିଣିନାହିଁ ତାହାକୁ ଏବେ ଜିଣିବଇଁ ।

ଲୋଭଥିଲେ ସବୁ ଶତୃଏ ଉପଗତ | ହୋଇ ନ କରନ୍ତି ଧର୍ମକୁ ପାରପତ
ଏପରି ଅନ୍ତରୀକ୍ଷ ଚିନ୍ତା କରି ମନେ | ଲୋଭକୁ ନାଶ କଲେ, ଜାଣ ଗୋ କହନେ ।

୩୨ ଅଧ୍ୟାୟରେ ବ୍ରାହ୍ମଣ ରୂପଧାରୀ ଧର୍ମ ଓ ଜନକଙ୍କର ମମତ୍ୱ ତ୍ୟାଗ ବିଷୟକ ସମ୍ବାଦ ଏହିପରି ବର୍ଣ୍ଣିତ । ଏକଦା କୌଣସି ଅପରାଧରେ ଦଣ୍ଡିତ ବ୍ରାହ୍ମଣଙ୍କୁ ରାଜା ଜନକ ନିଜ ରାଜ୍ୟରୁ ବହିଷ୍କାର କଲେ । ସେ ରାଜାଙ୍କୁ ନିଜ ରାଜ୍ୟର ସୀମା ତାଙ୍କୁ ବତାଇଦେବାକୁ କହିବାରୁ ଜନକଙ୍କର ମୋହନାଶ ହେଲା । କିଛି କାଳ ଚିନ୍ତାକରି ସେ କହିଲେ ପୃଥିବୀର ରାଜ୍ୟ ମୁଁ ପିତା ପିତାମହଙ୍କର ଉତ୍ତରାଧିକାରୀ ସୂତ୍ରେ ପାଇଥିବାରୁ ଏହା ମୋର ନିଜର ନୁହେଁ । କେବଳ ଆତ୍ମାରାଜ୍ୟ ମୋର ନିଜ ରାଜ୍ୟ । ତୁମ୍ଭେ ନିଜଇଚ୍ଛା ଅନୁସାରେ ନିଜେ ରାଜ୍ୟରେ ରହିଥାଅ । ରାଜ୍ୟରେ ମମତା ତାଙ୍କର କିପରି ପରିତ୍ୟାଗ କଲେ ବ୍ରାହ୍ମଣ ଏହି ପ୍ରଶ୍ନ ପଚାରିବାରୁ ଜନକ କହିଲେ - କର୍ମ ଅନୁସାରେ ପ୍ରାପ୍ତ ମନୁଷ୍ୟର ସବୁ ଅବସ୍ଥାରେ ଆଦି ଅନ୍ତ ଅଛି । ଏହା ଜାଣିବା ପରେ କୌଣସି ବସ୍ତୁ ମୋର ଏକା ନୁହେଁ ଏହା ମୋତେ ଜ୍ଞାତହେଲା । ଏହି ମମତ୍ୱ ତ୍ୟାଗ ଫଳରେ ମୁଁ ମିଥିଳାରୁ ମୋହର ଲୋଭ ଛଡ଼ାଇ ଦେଲି । ପଞ୍ଚଇନ୍ଦ୍ରିୟ ଭୋଗ ଦ୍ରବ୍ୟରେ ମୋରଆସକ୍ତି ରହିଲା ନାହିଁ । ଏହାକୁ ମୁଁ ନିଜର ସୁଖ ବୋଲି ଅନୁଭବ କଲିନାହିଁ । ମୋର ସମସ୍ତ କାର୍ଯ୍ୟର ଆରମ୍ଭ ଦେବତା, ପିତୃଦେବ, ଭକ୍ତ ଓ ଅତିଥିମାନଙ୍କର ହିତ ନିମିତ୍ତ କରାଯାଇଥାଏ । ଜନକଙ୍କ କଥା ଶୁଣି ବ୍ରାହ୍ମଣ ହସି ଉଠିଲେ ଓ ନିଜେ ସେ ଧର୍ମ ଦେବତା ଓ ତାଙ୍କର ପରୀକ୍ଷା ନେବାକୁ ଆସିଥିଲେ ବୋଲି କହିଲେ । ସେ ଯଥାର୍ଥରେ ବ୍ରହ୍ମବିଦ ଏହା ତାଙ୍କର ହୃଦବୋଧ ହୋଇଛି ବୋଲି କହିଲେ ।

ବ୍ରାହ୍ମଣ ଜନକର ସମ୍ବାଦ ଯେ ରୂପେ | ପଡ଼ିଛି ତା କହିବା ଶୁଣ ଗୋ ସେ ରୂପେ
ତୁମ୍ଭେ ମୋର ଦେଶରୁ ଯାଅ ହେ ବ୍ରାହ୍ମଣ | ସହି ନ ପାରିବି ମୁଁ ତୁମ୍ଭ ଆଚରଣ

ସେ ବ୍ରାହ୍ମଣ ବୋଇଲେ ତୁମ ଦେଶ କେତେ | ଅଛି ତା କହ ମୁଁ ଛାଡିବି ମହାମତେ
ଏହା ଶୁଣି ଜନକ ନ କହି କଥାକୁ | ଧ୍ୟାନ କରି ରହିଲେ ଦ୍ୱିଜ ଉତ୍ତରକୁ

ଏ ସବାଗୁଁ ତାଙ୍କର ଜାତ ହେଲା ମୋହ | ମୋହକୁ ଛଡାଇଣ ଜନକ ନୃସିଂହ
କହିଲେ ପିତୃପିତାମହଙ୍କ ଅର୍ଜିତ | ପୃଥିବୀ ହୋଇଅଛି ମୋହର ଆୟତ୍ତ

ମୋର ବୋଲି କରି ଭାବନା କଲେ ମୁହିଁ | କେହି ନୁହନ୍ତି ଆହେ ଜାଣ ହେ ଦ୍ୱିଜ ସାଇଁ
ଆତ୍ମାର ମୋହର ଯେ ନୁହଁଇ ଆୟତ୍ତ | ମହୀ କି ରୂପରେ ହେବ ହେ ଦ୍ୱିଜସୁତ

ତୁମ୍ଭର ଏବେ ଯହିଁ ହେଉଅଛି ଇଚ୍ଛା | ତହିଁ ଯାଅ ରହ ହେ ଦ୍ୱିଜକୁଳ ବଚ୍ଛା ।
ବ୍ରାହ୍ମଣ ବୋଇଲେ କହ କି ଆଶ୍ରେ କରି | ରାଜ୍ୟରୁ ମମତା ଛାଡିଲ ଦଣ୍ଡଧାରୀ ।

ଜନକ ବୋଇଲେ ହେ ସବୁରି ମୁଁ ନାଶ | ଜାଣିବାରୁ ଛାଡ଼ିଲି ସବୁରି ମୁହିଁ ଆଶ
ପଞ୍ଚମହାଭୂତଙ୍କ ପଞ୍ଚଗୁଣ ଯାକ | ଜିଣି ତ ଥିଲି ପୁର୍ବୁ ଦ୍ୱିଜଙ୍କ ନାୟକ ।

ମନୋରଥ କରିଲି ଆନଠାକୁ     ମୁଁ ତାକୁ ଘେନିଯାଏ ସୂକ୍ଷ୍ମରୂପକୁ
କରୁଅଛି କରମ ଦେବତା ଅତିଥି     ପାର ହେ ଦ୍ୱିଜବର ନୋହି କିଛି ବ୍ୟର୍ଥ ।

ବ୍ରାହ୍ମଣ ଏହା ଶୁଣି ହୋଇ ହସ ହସ     ବୋଇଲେ ମୁହିଁ ଧର୍ମଦେବତା ନରେଶ
ତୁମ୍ଭକୁ ଜିଣିବାକୁ ଆସିଥିଲି ମୁହିଁ     ଜାଣିଲି ବ୍ରହ୍ମବିଦ୍ ତୁମ୍ଭେ ନରସାଇଁ ।

ବ୍ରାହ୍ମଣ ବୋଇଲେ ଗୋ ନବୀନା ରତନ     ଏ ଜଗତ ବ୍ୟାପ୍ତ ମୁଁ ବ୍ରହ୍ମରୂପେ ଜାଣ
ତୁମ୍ଭେତ ହୋଇଅଛ ଭାରିଯା ମୋହର     ପାଇବ ମୋର ଦେହ ବୋଲି ମନେକର

(ଗ) ବ୍ରାହ୍ମଣ ଜନକଙ୍କର ସମ୍ବାଦେ ଯେରୂପେ     ପଢ଼ିଲୁ ତା କହିବା ଶୁଣ ଗୋ ସେ ରୂପେ
ତୁମ୍ଭେ ମୋର ଦେଶରୁ ଯାଅ ହେ ବ୍ରାହ୍ମଣ     ମୁହି ନ ପାରିବି ମୁଁ ତୁମ୍ଭ ଆଚରଣ ।

ସେ ବ୍ରାହ୍ମଣ ବୋଇଲେ ତୁମ୍ଭ ଦେଶ କେତେ     ଅଛି ତା କହି ମୁଁ ଛାଡ଼ିବି ମହାମତେ
ଏହା ଶୁଣି ଜନକ ନ କହି କଥାକୁ     ଧ୍ୟାନ କରି ରହିଲେ ଦ୍ୱିଜ ଉତ୍ତରକୁ ।

ଏ ସବାଶୁଁ ତାଙ୍କର ଜାତ ହେଲା ମୋହ     ମୋହକୁ ଛଡ଼ାଇଣ ଜନକ ନୃସିଂହ
କହିଲେ ପିତୃପିତାମହଙ୍କ ଅର୍ଜିତ     ପୃଥିବୀ ହୋଇଅଛି ମୋହା ଆୟତ୍ତ ।

ମୋର ବୋଲି କରି ଭାବନା କଲେ ମୁହିଁ     କେହି ନୁହନ୍ତି ଆହେ ଜାଣହେ ଦ୍ୱିଜସାଇଁ
ଆତ୍ମାର ଶବ୍ଦଟି ମୋହାର ଯେ ନୁହଁଇ ଆୟତ୍ତ     ମହୀ କି ରୂପରେ ହେବ ହେ ଦ୍ୱିଜସୁତ ।

ତୁମ୍ଭର ଏବେ ଯହିଁ ହେଉଅଛ ଇଛା     ତହିଁ ଯାଇ ରହ ହେ ଦ୍ୱିଜକୁଳ ବସା ।

## ଶେଷରେ ପ୍ରଶ୍ନୋତ୍ତର

ବ୍ରାହ୍ମଣୀ ବୋଇଲେ କି ଉପାୟ କଲେ     ଏ ଜ୍ଞାନକୁ ଲୋକ ପାଏ ତା କହ ଭଲେ
ବ୍ରାହ୍ମଣ ବୋଇଲେ ଗୋ ତପ, ଶାସ୍ତ୍ର ଦୁଇ     ଜାଣିଲେ ଏହି ଜ୍ଞାନକୁଟି ଜାଣ ପାଇ ।

ଏହା ଶୁଣି ଆହେ ଅର୍ଜୁନ ନିରବଧି     ବ୍ରାହ୍ମଣୀ ଆତ୍ମାଜ୍ଞାନେ କଳାଇଲେ ବୁଦ୍ଧି
ସେ ବ୍ରାହ୍ମଣୀ ମୋହର ବୋଲାନ୍ତିଟି ମନ     ସେ ବ୍ରାହ୍ମଣୀ ମୋହର ବୁଦ୍ଧି ଅର୍ଜୁନ ।

କ୍ଷେତ୍ରଜ୍ଞ ବୋଲି କରି ଯାହାକୁ ଟି କହି     ମନେ କର ତୁମ୍ଭେ ଅଟଇ ମୁହିଁ ସେହି
ବ୍ରାହ୍ମଣ ଗୀତାହେଲା ଏଠାରେ ସମାପ୍ତି     କହଇ କୃଷ୍ଣସିଂହ ଧରାକୋଟପତି ।

ବ୍ରାହ୍ମଣ ଗୀତାର ଶେଷ ୩୩ ଅଧ୍ୟାୟରେ ବ୍ରାହ୍ମଣ ନିଜ ପତ୍ନୀକୁ ତାଙ୍କ ନିଜର ଜ୍ଞାନନିଷ୍ଠ ସ୍ୱରୂପର ପରିଚୟ ପ୍ରଦାନ କରିଅଛନ୍ତି । ବ୍ରାହ୍ମଣୀଙ୍କୁ ସେ କହିଲେ ଅନ୍ୟ ପ୍ରାଣୀମାନଙ୍କ ପରି ସେ ଦେହାଭିମାନୀ

ଆଚରଣ କରୁନାହାନ୍ତି । ମୁଁ ବ୍ରାହ୍ମଣ, ଜୀବନ ମୁକ୍ତ ମହାତ୍ମା । ତୁମ୍ଭେ ମୋଠାରେ ପାପ ପୁଣ୍ୟର ଆସକ୍ତି ଲୋଡୁଅଛ । ମାତ୍ର ମୁଁ ବାନପ୍ରସ୍ଥୀ ଗୃହସ୍ଥୀ ଓ ବ୍ରହ୍ମଚାରୀ ସବୁ ଅଟେ । ଭୂତଳର ପ୍ରତି ବସ୍ତୁରେ ମୁଁ ବ୍ୟାପ୍ତ ଅଛି । ସବୁ ବସ୍ତୁ ସ୍ଥାବର ହେଉ ବା ଜଙ୍ଗମ ହେଉ ମୁଁ ତାର ବିନାଶକାରୀ । ସମସ୍ତ ପୃଥିବୀ ଓ ସ୍ୱର୍ଗ ମୋର ରାଜ୍ୟ । ଯେଉଁ ବୁଦ୍ଧି ବଳରେ ଏହା ଜଣାଯାଉଛି ମୁଁ ମଧ୍ୟ ସେହି ବୁଦ୍ଧି । ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମରେ ଥାଇ ଯେଉଁମାନଙ୍କର ବୁଦ୍ଧି ଶାନ୍ତି ସାଧନାରେ ଲାଗି ରହିଥାଏ ସେହିମାନେ କେବଳ ଶେଷରେ ସମସ୍ତ ନଦନଦୀ ସମୁଦ୍ରରେ ମିଶିବା ପରି ଏକ ମାତ୍ର ସଦ୍ ସ୍ୱରୂପ ବ୍ରହ୍ମଙ୍କୁ ପାଇଥାଆନ୍ତି । ଏହି ମାର୍ଗ ବୁଦ୍ଧିଗମ୍ୟ ଶରୀର ଦ୍ୱାରା ପ୍ରାପ୍ତ ହୋଇପାରେ ନାହିଁ । ଶରୀର କର୍ମର ହେତୁ । ସବୁ କର୍ମର ଆଦି ଅନ୍ତ ଅଛି । ତେଣୁ ତୁମ୍ଭେ ପରଲୋକରେ ତୁମ୍ଭର ଗତି ନିମିତ୍ତ ଚିନ୍ତା ନ କରି ପରମାତ୍ମାଙ୍କ ଭାବନାରେ ଲୀନ ରହିଲେ ଶେଷକାଳରେ ମୋର ସ୍ୱରୂପକୁ ପାଇପାରିବ । ବ୍ରାହ୍ମଣ ଗୀତା ଏହିପରି ଶେଷ ହେଲା ।



ଏ ଜୀବ ଆତ୍ମା ପରବଶ
ଅଦୃଷ୍ଟ କାରଣ ବିଶ୍ୱାସ
ଦୁଃଖପୀଡ଼ିତ କର୍ମଫଳେ
ସଂସାରେ ଜନ୍ମି ଅବହେଳେ
କର୍ମ ଆଦରି ସହେ ଦୁଃଖ
କେବେହେଁ ନୁହଇ ବିମୁଖ
ଦୁଃଖେ ନ ଛାଡ଼ି ନିଜପଥ
ଚଞ୍ଚଳ ନ କରଇ ଚିତ୍ତ
ଏଣୁ ମୁଁ ଦୁଃଖ ସୁଖ ସହି
ଏହା ଶିଖିଲି ଭୁମି ତହିଁ ।।

X X X X X

ଜୀବ ଇଶ୍ୱର ବଶ ହୋଇ
ଇନ୍ଦ୍ରିୟ ଅର୍ଥ ଭୋଗପାଇ
ଦେହରେ କରେ ଅହଙ୍କାର
ବୋଲଇ ସର୍ବ କର୍ମ ମୋର
ଏଣୁ ସେ କର୍ମର ଅଧୀନେ
ପଡ଼ଇ ଶରୀର ବନ୍ଧନେ
ବୋଲଇ କରୁଅଛି ମୁହିଁ
ମୋ ତହୁଁ କର୍ତ୍ତା ଭିନ୍ନ ନାହିଁ
ଦେହ ବନ୍ଧନେ ହୋଇ ଭ୍ରମ
କରଇ ନାନାମତେ କର୍ମ
ଭବ ବନ୍ଧନେ ଏହି ମତେ
ଭ୍ରମଇ ସୁଖ ଦୁଃଖ ପଥେ ।

-ଭାଗବତ ବାଣୀ

# ମୁଁ ହାଟ ବାହୁଡ଼ା

ହାଟେ ବୁଲି ବୁଲି ଜହ୍ନିଲା ଜ୍ଞାନ,
ମୁଁ ମଧ ମେଲିଲି ଗୋଟେ ଦୋକାନ ।
ଅରଜୁ ଅଛନ୍ତି ଲୋକେ ପଇସା,
ମୁଁ ମଧ ପାଇବି କଲି ଭରସା ।

X X X

ଅଇଲେ ଗହକି ଶୁଣି ମୋ ଡାକ
ପଚାରିଲେ ତୁମେ କି ଫଳ ବିକ ।
ବୋଇଲି ମୁଁ ଅନୁବାଦ ପୁରାଣ
ଆଛା ମିଠାଫଳ ଏହାକୁ ଜାଣ ।
ବୋଇଲା ମୋ କଥା ଶୁଣି ଗରାଖ
ବିରକ୍ତିରେ କରି ଅଳପ ରାଗ ।
ଏଗୁଡା ସବୁ ତ ପଚା ପୁରୁଣା
ଏ ସବୁର ମୂଲ୍ୟ ନିହାତି ଊଣା ।
ଯେବେ ଦେବ ତୁମେ ବିନା ମୂଲ୍ୟରେ
କୃପା କରି ନେଇ ଚାଖିବୁ ଥରେ ।

X X X

ମାତ୍ରକ ଏସବୁଫଳ ହଜମ କରି ଯେ ଜାଣେ
ଜଗତ ଜିଣେ ସେ ଆପଣା ଜ୍ଞାନେ ।

- ବ୍ୟାସକବି ଫକୀରମୋହନ